ଘଟଣା ଅବା ଲେଖକଙ୍କ ପ୍ରତିପତ୍ତି ପଛଆଡ଼େ ଦଉଡ଼ିବା ପରି ମନେ ହୁଅନ୍ତି ନାହିଁ; ଚରିତ୍ରଗୁଡ଼ିକର ଯେଉଁ ଅନୁଗାମିତ୍ୱ ଆମେ ଗୋପୀବାବୁଙ୍କ 'ମାଟିମଟାଳ' ଉପନ୍ୟାସରେ ଲକ୍ଷ୍ୟ କରୁ 'ପ୍ରେମାଶ୍ରମ'ରେ ତା' ଆଦୌ ନାହିଁ। ଅନ୍ୟ ଭାବରେ କୁହାଯାଇପାରେ, 'ମାଟିମଟାଳ'ରେ ଚରିତ୍ରଗୁଡ଼ିକ ଘଟଣା ପାଇଁ ସନ୍ନିଯୁକ୍ତ ହୋଇଛନ୍ତି। ମାତ୍ର ଯେଉଁ ଉପନ୍ୟାସଗୁଡ଼ିକ ପୃଥିବୀରେ ଖୁବ୍ ସଫଳ ହୋଇଛି ସେଗୁଡ଼ିକର ଘଟଣାଗୁଡ଼ିକ ଚରିତ୍ର-ବିକାଶରେ କେବଳ ସନ୍ନିଯୁକ୍ତ ହୋଇଥାନ୍ତି। ପାଠକ ତା' ଆପଣାର ସଞ୍ଚିତ ଅନୁଭୂତି ସବୁକୁ (ସେଗୁଡ଼ିକ ଯେତେ ଅରକ୍ଷା ଓ ଅନ୍ଧାର ହୋଇଥାଉନ୍ତୁ) ସାଧାରଣତଃ ଚରିତ୍ର ଭିତରେ ମିଳାଇ ପଡ଼େ। ସେଇଥିପାଇଁ ବହୁ ପୃଷ୍ଠାର ଗଦ୍ୟ କାହାଣୀକୁ ସେ ଏତେ ନିବିଷ୍ଟ ଚିତ୍ତରେ ପଢ଼ିଥାଏ। 'ମାଟିମଟାଳ' ସହଜ ତଥା ଏକ ସମ୍ଭାବ୍ୟ ସତ୍ୟ ପ୍ରକାଶପ୍ରବଣ ହୋଇ ନ ଥିବାରୁ ପାଠକର କ୍ଲାନ୍ତି ଆଣେ ଓ ରବି ଛବି ଚରିତ୍ର ଅଧ୍ୟୟନ ସେଥିପାଇଁ ସ୍ୱାଦ୍ୟ ହୋଇପାରେନା।

କାହ୍ନୁ ଚରଣଙ୍କ 'ଅଦେଖା ହାତ'ର ଗୀତା ଭିତରେ ମଣିଷ ଜାତିର ଦୈନ୍ୟଦୁଃଖଗ୍ରସ୍ତ ସହସ୍ର ଅନୂଢ଼ା ନିଜକୁ ଯେପରି ଦେଖିପାରେ ଆଜି ତା'କୁ ଆପଣାର କରିପାରେ, ଯୌବନର ଚଞ୍ଚଳ ଆଚରଣ ଭିତରେ କେତେଜଣ କୁମାରୀ କନ୍ୟା ଛବିର ଆଦର୍ଶକୁ ନିଜ ଭିତରେ ବାନ୍ଧି ରଖି ପାରିବେ? ରବି ଛବି ଏ କ୍ଲେଦାକ୍ତ ପୃଥିବୀର ସହଜ ମଣିଷ ପରି ମନେ ହୁଅନ୍ତି ନାହିଁ। ମନେ ହୁଅନ୍ତି ବରଂ ଉଦ୍ଦେଶ୍ୟ-ନିର୍ଦ୍ଦିଷ୍ଟ ଦୁଇଟି ନିର୍ଜୀବ କଂପ୍ୟୁଟର ପରି।

ଗୋପୀବାବୁଙ୍କ ଉପନ୍ୟାସ ସବୁର ଅଧ୍ୟୟନଦ୍ୱାରା ବହୁପୂର୍ବରୁ ତାଙ୍କର ବିଳମ୍ବିତ ଶୈଳୀ ବିଷୟରେ ଓଡ଼ିଶାର ପାଠକ ସମସ୍ତେ ପ୍ରାୟ ଜାଣନ୍ତି। ଏ ଜାଣିବାଟା ସବୁଠାରୁ ଖୋଲଖୋଲା ହୋଇଯାଏ 'ମାଟିମଟାଳ'ରେ। 'ମାଟିମଟାଳ'ରେ କିଛି ଶୈଳ୍ପିକ ସଂଯମ ବା

ସ୍ୱଗୋପଣୀୟତା ଅବା ବସ୍ତତା ଅଛୁ ଯାହା ସୃଷ୍ଟିଧର୍ମୀ କଳାକୃତି ବିଶେଷତଃ ଉପନ୍ୟାସ ସାହିତ୍ୟର ଅଭିବ୍ୟଂଜନାଗତ ଚାପ ସୃଷ୍ଟି କରୁଛି—ଏ କଥା ସହଜରେ ପାଠକ ମନେ କରି ପାରେନି; ବରଂ ଏକ ଉଲଙ୍ଗ ପ୍ରବୃତ୍ତିପ୍ରବଣତା ଲକ୍ଷ୍ୟ କରେ ।

ଭାରତର-ଗ୍ରାମ୍ୟ ଜୀବନବୋଧ ତଥା ଜୀବନପ୍ରିୟତାକୁ ନେଇ ନାଟକ ବର୍ଣ୍ଣନାତ୍ମକ ଶୈଳୀରେ ଭ୍ରମଣବୃତ୍ତାନ୍ତ ଲେଖିଥିବା ସିନ୍ଥିଆ ବୋଲ୍ସଙ୍କ ପ୍ରସିଦ୍ଧ 'ଭାରତ ମୋର ଘର' ଗ୍ରନ୍ଥର ଭାବ ଓ ଭାଷା ପାଠକର ହୃଦୟକୁ ଯେପରି ଛୁଏଁ, 'ମାଟିମଟାଳ'ର ଗ୍ରାମ୍ୟ ଜୀବନ ବିଷୟକ ବର୍ଣ୍ଣନା ସେପରି ପ୍ରଭାବ ସୃଷ୍ଟି କରି ପାରେନା । କାରଣ ଲେଖକଙ୍କ ପ୍ରଚାର-ଉଦ୍ଦେଶ୍ୟ ବିଷୟରେ ପାଠକ ମୂଳରୁ ହିଁ ବଡ଼ ଏଲର୍ଜିକ୍ । ସମୁଦାୟ ବିଷୟଟି ଯେତେ ଅବା ଔପନ୍ୟାସିକ ଗୋପୀ-ବାବୁଙ୍କ ନିହାତି ଏକ ଆତ୍ମଭାବକଥନସର୍ବସ୍ୱ ଦୀର୍ଘ ସାହିତ୍ୟିକ ବର୍ଣ୍ଣନା । ପୁଣି ଶିଳ୍ପାଂଶର ଗତିଶୀଳତା ଦୃଷ୍ଟିରୁ 'ମାଟିମଟାଳ'ର ଆବେଦନକ୍ଷମତା ଯେପରିବିଳମ୍ବିତ ତଥା ବିକ୍ଷିପ୍ତ, ତା'ର ଅବବୋଧନ, କ୍ଷମତା ମୂଳ ରବି-ଛବିର ପ୍ରେମଭାବନା ବିଷୟଦ୍ୱାରା ବଞ୍ଚିତ ହୋଇ ଗ୍ରାମଗଠନା ବର୍ଣ୍ଣନାରେ ଅଯଥା ଶିଥିଳ ହୋଇଛିସିନା, କଳାସୃଷ୍ଟିର ଚୂଡ଼ାନ୍ତରୂପ ହୋଇପାରିନାହିଁ । ଏପରିକି ମୂଳ ଶିଳ୍ପର ଉତ୍ତରଣକ୍ଷମତା ବର୍ଣ୍ଣନାର ଜଙ୍ଗଲ ଭିତରେ ଅସ୍ପଷ୍ଟ ହୋଇ ଯାଇଛି । ରବି-ଛବିର ନିର୍ଦ୍ଦିଷ୍ଟ ପ୍ରଣୟ ପ୍ରସଙ୍ଗରୁ ଉଚ୍ଚକିତ ପ୍ରଣୟ ଭାବନାର ଯେଉଁ ଉଦ୍‌ଗମ ହୋଇଥିଲା ସେ, ତାହା 'ମାଟିମଟାଳ'ର ଯୋଜନା ବ୍ୟାଖ୍ୟା ଭିତରେ ଏପରି କ୍ଷୀଣ ହୋଇଯାଇଛି ଯେ 'ମାଟିମଟାଳ'ର ମୂଳସ୍ପନ୍ଦକୁ ସେପାଇଁ ଶକ୍ତି ହୁଏନା ।

ପରିକଳ୍ପନା ଦୃଷ୍ଟିରୁ ଦେଖିଲେ ଭାରତବର୍ଷର ଭୂଦାନ ଆନ୍ଦୋଳନ ଅବା ଗ୍ରାମଦାନ ଆନ୍ଦୋଳନ ଉପରେ ଲିଖିତ ଯେ

କୌଣସି କ୍ଷୁଦ୍ର ପୁସ୍ତିକା ସୃଷ୍ଟିର ଉଦ୍ଦେଶ୍ୟ ଯାହା 'ମାଟିମଟାଳ'ର
ମନକଳ୍ପନା ତଥା ତାର ପଟଭୂମି ପ୍ରାୟ ତାହା ବୋଲି ମନେ ହୁଏ ।
ମିଖାଇଲ ଶୋଲକୋଭ୍, ଟଲଷ୍ଟୟ କିମ୍ବା ମେଲଭିଲ୍‌ଙ୍କ ଉପନ୍ୟାସ-
ଗୁଡ଼ିକ ଗମ୍ଭୀର ଆଦର୍ଶ ପ୍ରଚାର କରିଥିଲେ ହେଁ ଅଜସ୍ର ବର୍ଣ୍ଣନା
ଭିତରେ କିନ୍ତୁ ମୁଖ୍ୟତଃ ସେ ଉପନ୍ୟାସଗୁଡ଼ିକରେ ମଣିଷ ଓ ତାଂ'ର
ସୁଖ ଦୁଃଖର ଶାଶ୍ବତ କାହାଣୀ ଲେଖା ଯାଇଛି । ସେପାଇଁ ସେ ସବୁ
ଉପନ୍ୟାସମାନଙ୍କରେ ପ୍ରଚାର ବଡ଼ କଥା ନ ହୋଇ କଳାଶ୍ରୀ ସୃଷ୍ଟି
କରିବା ହିଁ ବଡ଼ କଥା ହୋଇଛି । 'ମାଟିମଟାଳ'ରେ ପ୍ରଚାର ପାଇଁ
ଔପନ୍ୟାସିକ ଘଟଣା ଉପରେ ଏପରି ଗୁରୁତ୍ୱ ଦେଇଛନ୍ତି ଯେ, ରବି
ଲବ ପରି ମୁଖ୍ୟ ଚରିତ୍ର ମାନଙ୍କ ସମ୍ବନ୍ଧ ଅଧିକାଂଶ ଚରିତ୍ର ଘଟଣା
ପଶ୍ଚାତରେ ରହିଗଲା ପରି ମନେ ହୁଅନ୍ତି । ଚରିତ୍ରଗୁଡ଼ିକ ସେଥିପାଇଁ
ବାୟୁବୀୟ ବା ଭାସମାନ ଜଣା ପଡନ୍ତି ।

ପୁଣି ଶିଳ୍ପ ଓ ଚରିତ୍ରକୁ ଯୋଡ଼ି ଦେବାର ମଧ୍ୟ ଭାଗରେ
ଗୋପୀନାଥ ସଂଯୋଜକ ଭାବେ ଏତେ ବେଶୀ ଭୂମିକା ଗ୍ରହଣ
କରନ୍ତି ଯେ, ସେ ଅଧିକାଂଶ କଥା ନିଜେ ତୃତୀୟ ପୁରୁଷ ହିସାବରେ
କହିଛନ୍ତି; ତାଙ୍କ ପ୍ରଗଲ୍‌ଭ ଭାଷଣ-ସୁଅରେ ପାତ୍ର ପାତ୍ରୀମାନେ ସତେ
ଯେପରି ଭାସି ଚାଲିଛନ୍ତି । ଶିଳ୍ପ ଓ ଚରିତ୍ର ଗୁଡ଼ିକ ଯେଉଁଠି ବେଶୀ
ପ୍ରାଣବାନ ମନେ ହୁଅନ୍ତି, ସେଠି ଲେଖକ କିନ୍ତୁ ବେଶୀ ନେପଥ୍ୟରେ
ଥାଆନ୍ତି ଓ ଯେଉଁ ବାର୍ତ୍ତା ଦିଅନ୍ତି ତାହା ଚରିତ୍ରଗୁଡ଼ିକର ସୁଖ
ଦୁଃଖର ଘଟଣା ପ୍ରବାହ ଭିତରେ ବ୍ୟକ୍ତ ହୋଇଥାଏ । ଏ ସବୁ
ନଥାଇ କିନ୍ତୁ ଯେଉଁଠି ବର୍ଣ୍ଣନା ପ୍ରତ୍ୟକ୍ଷ ଭାଷଣରେ ମୂର୍ତ୍ତ, ସେଠି ଏକ
ପ୍ରକାର ପାଣ୍ଡିତ୍ୟ ବା ଶାସ୍ତ୍ରୀୟତା ଥାଇପାରେ, ମାତ୍ର ତାହା ସୁଖ-
ପାଠ୍ୟ ହୋଇ ନ ପାରେ । 'ମାଟିମଟାଳ'ର ସମୁଦାୟ ଶୈଳୀଟି ଏହି
ଧରଣର । ଗୋପୀନାଥଙ୍କ ଅନର୍ଗଳ ବକ୍ତୃତାପ୍ରବଣତା କୌଣସି

ବଧି ନିଷେଧ ମାନ ନାହିଁ । 'ମାଟିମଟାଳ' ପଢ଼ୁଥିଲା ବେଳେ ତେଣୁ ଗୋପୀନାଥଙ୍କ ଶୈଳୀ ସମ୍ପର୍କରେ ମାନସିଂହଙ୍କ ନିମ୍ନଲିଖିତ ଅଭିମତ ବାରମ୍ବାର ମନେପଡ଼େ :

> ମହାନ୍ତିଙ୍କ ଉପନ୍ୟାସ ସୁଖପାଠ୍ୟ ନୁହେଁ । ମହାନ୍ତି କେଉଁଠି କଲମକୁ ବନ୍ଦ କରିବେ ତାହା ଆଦୌ ଅଭ୍ୟାସ କରିନାହାନ୍ତି ଓ ଲେଖି ଚାଲିଥାନ୍ତି, ଯେପରି କି ତାଙ୍କର ସହୃଦୟତମ ପାଠକର ମଧ୍ୟ ଧୈର୍ଯ୍ୟଚ୍ୟୁତି ଘଟିବ ।...ତାଙ୍କର ଉପନ୍ୟାସାବଳୀ ବେଶୀ କାଳ ଜନପ୍ରିୟ ନ ହେବାର ଆଶଙ୍କା; କାରଣ ସେଗୁଡ଼ିକରେ କୌଣସି ଶାଶ୍ୱତ ମାନବିକ ସମସ୍ୟା ସବୁର ବିଚାର ହୋଇନି; ହୋଇଛି କୌଣସି କୌଣସି ସାମାଜିକ ଅବସ୍ଥାର ଯାହା ଅଳ୍ପକାଳ ଭିତରେ ପରିବର୍ତ୍ତିତ ହୋଇଯିବାର ଆଶା । ('ଓଡ଼ିଆ ସାହିତ୍ୟର ଇତିହାସ', ଗ୍ରନ୍ଥମନ୍ଦିର (କଟକ), ୧୯୬୭, ପୃ. ୪୦୩)

'ମାଟିମଟାଳ' ପଢ଼ିବା ପାଇଁ ପାଠକର ଅନ୍ୟ ଆକର୍ଷଣ କ'ଣ ଅଛି ? ରବି ଛବିର ସମ୍ପର୍କ ଯୌବନର ସଂଯମ ଓ ସଂଗଠନ ଭିତରେ ଯେପରି କଠିନ ହୋଇ ଯାଇଛି ଜୀବନର ସହଜ ଅଭ୍ୟାସ ଅବା ପ୍ରେମର ସଂଭାବ୍ୟ ପ୍ରସଙ୍ଗ ସେଠି କାହିଁ ? 'ମାଟିମଟାଳ'ର ଆବେଦନ ସେପାଇଁ ପାଠକ ମନରେ କୌଣସି ଆଲୋଡ଼ନ ସୃଷ୍ଟି କରି ପାରୁନାହିଁ । ଚରିତ୍ରଗୁଡ଼ିକ ମଧ୍ୟ ପାଠକର ସ୍ମୃତିରେ ବେଶିଦିନ ଅପାଶୋରା ହୋଇ ରହିପାରୁ ନାହାନ୍ତି ଯେପରି ଫକୀରମୋହନଙ୍କ ଉପନ୍ୟାସର ଚରିତ୍ରଗୁଡ଼ିକ ରହି ପାରନ୍ତି ।

କାରଣ, ଏ ପୃଥିବୀରେ ମହତ୍ତର କିମ୍ବା ଉଚ୍ଚାଙ୍ଗ କୌଣସି ଆଦର୍ଶ ଅପେକ୍ଷା ପାର୍ଥିବ ଜୀବନବୋଧର ଅଭିବ୍ୟଞ୍ଜନା ମଣିଷକୁ ବେଶୀ ସ୍ପର୍ଶ କରେ । ମୋଲନୋଭ, ଏରେନବର୍ଗ, ପୁଷ୍କିନ ଯେଉଁ

ଲିପ୍ସାବଦ୍ଧ କରି ଆଙ୍କିଛନ୍ତି ତଥା ସାମ୍ୟବାଦୀ ସମାଜର ଯେଉଁ କଥା ବାଢ଼ିଛନ୍ତି, ତାହା ଅପେକ୍ଷା ତାଙ୍କ ଉପନ୍ୟାସର ଅଧିକ ପ୍ରଭାବ ସେଇଠି, ଯେଉଁଠି ସେମାନେ ବୋମାବର୍ଷୀ ବିମାନ ସ୍ଥିର ହୋଇ ଯାଇଥିବା ଆକାଶ ତଳେ ଗୋଟିଏ ନିଷ୍ପାପ ଶିଶୁର ମମତାକୁ ଅଶ୍ରୁର ଅକ୍ଷର ଭିତରେ ଲେଖିଛନ୍ତି । ଅଶୀତିବର୍ଷ ବୃଦ୍ଧ ଧୀବର ସମୁଦ୍ର ଗର୍ଭରେ ଯେତେବେଳେ ତା'ର ମୃତ ପତ୍ନୀ କଥା ମନେ ପକାଉଛି ସେତେବେଳେ ସେହି ଦୃଶ୍ୟମାନଙ୍କରେ ହେମିଂଗ୍ ୱେଙ୍କର **"The Old Man and the Sea"** ର ପାଠକ ବେଶି ଭାବ-ପ୍ରବଣ ହୁଏ, ଯଦିଓ ଉପନ୍ୟାସର ମହାନ୍ତି ମାନବତାବାଦର ଉଚ୍ଚତମ ଆଦର୍ଶ ଉପରେ ପ୍ରତିଷ୍ଠିତ । ତତ୍ତ୍ୱ ଅବା ପ୍ରଚାର କୌଣସି କାଳରେ କଳାର ମାନ ବଢ଼ାଏନି ବରଂ କଳାର ମର୍ଯ୍ୟାଦା ହାନିକରେ । ଶଦ୍ୟାପନ୍ତ କବିତାର ତତ୍ତ୍ୱ ଅପେକ୍ଷା ଗୋପଦାଣ୍ଡର ଭୂଲୁଣ୍ଠିତ କନ୍ଦାକଟା ହିଁ ଅଧିକ ପ୍ରାଣସ୍ପର୍ଶୀ ।

'ମାଟିମଟାଳ'ର ତତ୍ତ୍ୱ ପାଠକର ମନକୁ ଛୁଏଁ ନାହିଁ, ଯେମିତି ଛୁଇଁଛି ତାଙ୍କର 'ଦାଦିବୁଢ଼ା', 'ପରଜା', 'ହରିଜନ', 'ଲୟବିଲୟ', ଅବା 'ଦାନାପାଣି' ପ୍ରଭୃତି ଉପନ୍ୟାସର ଗଳ୍ପଗୁଡ଼ିକ । 'ମାଟିମଟାଳ'ର ରବିଠାରୁ ଆରମ୍ଭ କରି ନନ୍ଦ ଚହିମିଲଦାର ପର୍ଯ୍ୟନ୍ତ ସମସ୍ତେ କାଞ୍ଚପୁ ଯୋଜନାର ସ୍ରୋତରେ ଯେପରି ମାମିଲ ହୋଇଛନ୍ତି, ତାହାରୁ ସେମାନେ ଅଧିକ ଆଦର୍ଶାୟିତ ହେବାଲ ସେମାନଙ୍କ ସହଜ ଆଚରଣ-ଠାରୁ ଦୂରେଇ ଯାଇଛନ୍ତି ।

ଯେଉଁ ଚରିତ୍ରଗୁଡ଼ିକ ଭୁଲ ଠିକ୍ ଅବା ପାପ ପୁଣ୍ୟ ଭିତରେ ଘାଣ୍ଟି ହୋଇ ଧୂଳିମଖା ପୃଥିବୀ ପୃଷ୍ଠରେ ଚାଲନ୍ତି ସେମାନଙ୍କୁ ଆପଣାର କରି ନିଜ ଭିତରେ ଓ ନିଜକୁ ସେମାନଙ୍କ ଭିତରେ ଦେଖିବାର ଯେଉଁ ମାନସିକ ସନ୍ତୋଷ ଅବା ସାନ୍ତ୍ୱନା ମିଳେ,

'ମାଟିମଟାଳ'ର ଚରିତ୍ର ଗୁଡ଼ିକ ସେ ଉଦ୍ଦେଶ୍ୟ ସାଧନ କରି ପାରିନ୍ତି ନାହିଁ । ଏହି ଜନପଦର ଜଣେ ବେକାର ଯୁବକ ରବିକୁ ନିଜ ଭିତରେ ଦେଖିପାରେ ନାହିଁ । ବରଂ ରବି ତା'କୁ ଦୂରତମ ପୃଥିବୀର ଭିନ୍ନ ଏକ ମଣିଷ ଭଳି ମନେ ହୁଏ । ଅତ୍ୟଧିକ ଆଦର୍ଶସଂଯୁକ୍ତ ହେଲେ ସଂସ୍ଥାପିତ ଚରିତ୍ରଟିକୁ ଆଜି ନିଜସ୍ୱ ଅବବୋଧ ବା ଅନୁଭୂତି ଭିତରେ ଅବଧାରଣା କରି ହୁଏ ନାହିଁ । ବନ୍ଧ୍ୟା ସାରିଆ ପୁତ୍ରବତୀ ହେବା ପାଇଁ କେଉଁ ତପସ୍ୟା ନ କରିଛି ! ସାରିଆର ଏହି ଅତୃପ୍ତିତା ଆମ ଆଖିକୁ କେତେବାର ଅଶ୍ରୁ ସଜଳ ନ କରେ ! ପୃଥିବୀର ଏମିତି ଚିରନ୍ତନ କଳା ଗୌରବ ଲାଭ କରିଥିବା ବିଶ୍ୱବିଶ୍ରୁତ ଉପନ୍ୟାସ-ମାନଙ୍କରେ ଯେଉଁ ଚରିତ୍ରଗୁଡ଼ିକ ଶାଶ୍ୱତ କାଳ ପାଇଁ ବଞ୍ଚିଛନ୍ତି ସେମାନେ ମଣିଷର ଅପୂର୍ଣ୍ଣ ଗଠନ ଅବା ବେଦନାଦଗ୍ଧ ମନକୁ ଉଖାରିଛନ୍ତି । ପାଠକ ଆପଣାର ସଂବେଦ୍ୟ ମନଦେଇ ନିଜସ୍ୱ ଅନୁଭୂତି ଭିତରେ ସେ ଚରିତ୍ର ଗୁଡ଼ିକୁ ଦେଖେ । କାହ୍ନୁବାବୁଙ୍କ 'ଅଦେଖା ହାତ'ର ଗୀତା ସେ ପାଇଁ ସମସ୍ତଙ୍କୁ ଛୁଇଁ ପାରିଛି । ଗୋପୀନାଥଙ୍କ ପୁଷ୍ପ, କଳା, ଅବା ପୁନି ମଧ୍ୟ ସେମାନଙ୍କ ଉଦ୍‌ଗତ ଅଶ୍ରୁ ଭିତରେ ପଢ଼ୁଥିବା କେତେ ଶୀତଳ ଜହ୍ନରାତି ମନେ ପକାଇ ନ ଦିଅନ୍ତି !

ପ୍ରେମଚନ୍ଦଙ୍କ 'ଗୋଦାନ' ବା 'ପ୍ରେମାଶ୍ରମ' ଖାଲି ଉତ୍ତର ପ୍ରଦେଶର ନୁହେଁ, ସାରା ପୃଥିବୀର ଦୁର୍ଗତ କୃଷୀ ମୂଲିଆ କଥା ଲେଖିଛି । ଶାଶ୍ୱତ ସମସ୍ୟର ନିସ୍ପନ୍ଦରେ କୃଷୀ ମୂଲିଆର ଜୀବନକୁ ଜୀବନ୍ତ କରି ଆଙ୍କିବାପାଇଁ ସେ କେତେ ନେଗେଟିଭ ପ୍ଲଟ୍‌ର ପରିକଳ୍ପନା ନ କରିଛନ୍ତି ! ଉପନ୍ୟାସକୁ ତାହା ଅଧିକାଂଶରେ ସୁଖପାଠ୍ୟ କରିଛି । 'ମାଟିମଟାଳ'ର ଘଟଣା ସେ ଦୃଷ୍ଟିରୁ ଯଦି ଏକ ଯୌଗିକ ଗଳ୍ପ

(**Compound Plot**)ହୋଇ ଥାଆନ୍ତା ତା ହେଲେ 'ମାଟିମଟାଳ' ଅଧ୍ୟୟନର କିଛି କ୍ଲାନ୍ତି ଅପନୋଦିତ ହୋଇ ପାରନ୍ତା । କାରଣ ନିର୍ଦ୍ଦିଷ୍ଟ ଗୋଟିଏ କାନଭାସ୍‌ର ଛବି ଦୀର୍ଘ ସମୟ ଧରି ଦେଖିବାପାଇଁ ପାଠକଙ୍କୁ ଭଲ ଲାଗେ ନାହିଁ । ରବି ଗୃହକେନ୍ଦ୍ରିକମୁଖୀ ହୋଇ ନିଜ ଗାଁରେ ସଂଗଠନ ଭିତରେ ଜୀବନ ଯାପନ କରିବାର ପ୍ରତିଜ୍ଞାରୁ 'ମାଟିମଟାଳ'ର ବିଷୟ ଆରମ୍ଭ ହୋଇ ଶେଷ ହୋଇଛି ସଂଗଠନାର ସାଫଲ୍ୟରେ । ସଫଳତାର ଏହି କାହାଣୀକୁ ଔପନ୍ୟାସିକ 'ଶାନ୍ତି ଓ ସ୍ୱସ୍ତି'ର ପଦପଦକା କବିତା ଭିତରେ ସତେ ଅବା ଲେଖିଛନ୍ତି ! ମନେ ହୁଏ, ସତେ ଯେପରି 'ସର୍ବେ ସନ୍ତୁ ନିରାମୟା' ଭାବର 'ମାଟିମଟାଳ' ଏକ ଦୀର୍ଘାୟିତ ଏକକ ବିଶ୍ଳେଷଣ ମାତ୍ର, ଯେଉଁ ବିଶ୍ଳେଷଣକୁ ଶିଳ୍ପ ଦୃଷ୍ଟିରୁ ଏକ ଅନାବଶ୍ୟକ ବିସ୍ତୃତିକରଣ ବୋଲି କୁହାଯାଇପାରେ । ଭାରତୀୟ ପଲ୍ଲୀଜୀବନ ଅବା ତା'ର ଜୀବନପ୍ରିୟତାର କଳାତ୍ମକ ଅଭିବ୍ୟକ୍ତି ଦୃଷ୍ଟିରୁ 'ମାଟିମଟାଳ' ଏକ ସ୍ଥିତିକୃତ ମେଡ଼ିଓକର୍ (**mediocre**) ସୃଷ୍ଟି ସିନା, ଅନ୍ୟ କିଛି ନୁହେଁ ।



## ବ୍ୟର୍ଥ ସମୟର ମୂଲ୍ୟାୟନ : ଶ୍ରୀ ପ୍ରମୋଦ ପଣ୍ଡା

( ୧ )

କୌ ରଙ୍ଗର ଜ୍ୟାମିତି ସତରେ
ଏବେ ଅସ୍ତବ୍ୟସ୍ତ କରେ ମୋତେ
ସ୍ୱପ୍ନ ଦେଖିସାରି ଉଠିବାରେ
ଠାଣି, ନଦୀ ବର୍ତ୍ତମାନକୁ ସାକ୍ଷୀ କରି
ନିଷ୍ଠୁର ସତ୍ୟର ସାମ୍ନାସାମ୍ନି ହେବାରେ ॥

ହେ ସମୟର ଋଚିର ଯାଦୁକର
କ'ଣ ସବୁ ଦେଖାଉଛ ତୁମର ଲୀଳାଖେଳା ପାଇଁ
ଆତ୍ମସ୍ଥ ବିଶ୍ୱାସର ବିମର୍ଷତା
ନା ଆତତାୟୀ ଭୂମିକାର ଉଦ୍‌ବେଗତା !!

ସମସ୍ତ ବନ୍ଧୁଅର ଫୋପାଡ଼ ଦିଏ
ମୋ ପ୍ରେମିକାର ଫଟୋଗ୍ରାଫ୍
ବେଳେ ବେଳେ ଅବଶ ଦେହକୁ ଆଲିଙ୍ଗନ କରେ
ଶୂନ୍ୟ ଗର୍ଭର ଯନ୍ତ୍ରଣା ମଧ୍ୟରୁ ଉଠାଇ ଆଣି । ପୁଣି
କେତେବେଳେ ଚକ୍ରର ଭୂମିକାର ସ୍ପର୍ଶ ତ
କେତେବେଳେ ନିଃସଙ୍ଗତାର ମନନ ଚେତହେବ ।

ଆଉ କିଏ ବା ଅଛି ଏତେ କ୍ଷମତାଶାଳୀ ଯେ
ଯନ୍ତ୍ରଣି ଚିହ୍ନାଇ ଦେବ ବର୍ତ୍ତୁଳ ଶୋକକୁ
କାଳର ସତ୍ୟରେ ॥

( ୨ )

ମୁଁ କ'ଣ ବୋଲି ଚିତ୍କାର କରି ଡାକିବି
ବେପରୁଆ ବିଶ୍ୱାସର ନିଜ ଲୋକମାନଙ୍କୁ
କ'ଣ ବୋଲି ସ୍ପର୍ଶାତୁର କୁହୁକିନୀ କନ୍ୟାମାନଙ୍କୁ
ସମୟର ବର୍ଚ୍ଛା ମୁନରେ ରକ୍ତାକ୍ତ କରିବି
ବିଦଗ୍ଧ ମାଧବର ମନଭୁଲା ଭୂମିକାରେ ?

ସତରେ ସମସ୍ତର ଝୁଲମନଠାରୁ ଆଉ ବେପରୁଆ
କଏ ନାହିଁ । କେତେବେଳେ ବ୍ୟପନ୍ନ ମର୍ଯ୍ୟାଦାକୁ
ଠେଲି ଦିଏ ତ କେତେବେଳେ
ଡବ୍ ଡବ୍ ଆଖିର ବୈଚିତ୍ର୍ୟକୁ ଫୋପାଡ଼ିଦିଏ
ଅନୁଭୂତିର ସଙ୍କୋଚ ମଧ୍ୟକୁ
ବା ଅବାସ୍ତବ କଳ୍ପ ଅଲୁଅର ସ୍ୱପ୍ନକୁ ।

( ୩ )

ସମସ୍ତର ସର୍ତ୍ତ ସବୁ କଳା ପଡ଼େ
ଦୁଃଖର ରଙ୍ଗରେ । ପୁଣି ଆହ୍ଲାଦମୀ
ନାଗ୍ରଙ୍କ ମେଳରୁ ସମସ୍ତ ଓହ୍ଲାଇ ଆସେ
ତ୍ରିରଙ୍ଗୀ ଠାଣିରେ ।
ସବୁଜ ଖେଳର ନିୟମ
ଶୋଭାଯାତ୍ରାରେ ମୁଖରିତ ସମସ୍ତ
ପିଲାର ଚକିତ ଶୁଦ୍ଧାଣୀରେ ସ୍ତମ୍ଭୀଭୂତ ସମସ୍ତ
ନର୍ତ୍ତକୀର କଟାକ୍ଷରେ ଲାଞ୍ଛିତ ସମସ୍ତ
ଆଉ ମଞ୍ଚର କରତାଳରେ /
ନେତାଙ୍କର ମିଛ ଭାଷଣରେ /
ରେଶନର 'କ୍ୟୁ' ରେ /
ବସ୍ଲୁଷାର ସ୍ଲୋଗାନ୍‌ରେ /
କବିର ଭାବନାରେ
ଚିର ଉତ୍‌ଫୁଲ୍ଲିତ ସମସ୍ତ
କେଉଁ ଝୁଲମନର ସତ୍ୟରେ ବା
ଲାଗି ରହି ଯାଇଛୁ ନା ସମ୍ପର୍କ ଯୋଡ଼ୁଛୁ ।
ଆରମ୍ଭରୁ ଶେଷ ପୁଣି ଶେଷରୁ ଆରମ୍ଭ ଯାଏଁ
ଶବ୍ଦଙ୍କର ଇଲାକା ମଧ୍ୟରେ ॥ ●

ସାଂପ୍ରତିକ କବିତାରେ ସାଧାରଣତଃ କୌଣସି ଗୋଟିଏ ଅନୁଭୂତିକୁ ଆଖିରେ ରଖି ଭାଷା, ରୂପକଳ୍ପ ବା ଗଢ଼ଣ କରିଆରେ କ୍ରମେ ସେ ଅନୁଭୂତିକୁ ଯେପରି ଏକ ନିୟନ୍ତ୍ରିତ ସ୍ତରକୁ ଅଣାଯାଏ, ପ୍ରମୋଦ ପଣ୍ଡାଙ୍କ କବିତାରେ ତାର ସ୍ପଷ୍ଟ ବ୍ୟତିକ୍ରମ ଦେଖାଯାଏ । 'ସମୟ' ବା କୌଣସି ଅତିନ୍ଦ୍ରିୟ (ଆବ୍‌ଷ୍ଟ୍ରାକ୍‌ଟ) ବିଷୟକୁ ପୃଷ୍ଠଭୂମି କରାଯାଇ କବିଙ୍କ ଅନୁଭୂତି ଓ ଚେତନାକୁ ବିବଦମାନ ବିଚ୍ଛିନ୍ନତା ଭିତରେ କ୍ରମେ ଏକ ବିପରୀତମୁଖୀ ଅସଂଲଗ୍ନ ସ୍ତରକୁ ନିଆଯାଇ ଆଧୁନିକ କବିତାର ନୂଆ ପରିଚୟ ଗୋଟିଏ ମିଳିବାର ସଂଭାବନା ହୁଏତ ଏହି କବିତାରେ ରହିଛି । ବିଚ୍ଛିନ୍ନତା ଅନୁଭୂତିର ମୂଳକଥା । ତେବେ ଦୁର୍ବୋଧତାର ଅଭାବ ବିଚ୍ଛିନ୍ନତାକୁ କେତେକାଂଶରେ ପ୍ରଭାବିତ କରେ, ଯା'ଙ୍କ ସମସାମୟିକ କବିଚେତନାରେ ପ୍ରାୟ ଦେଖାଯାଏ ।

ତିନିଭାଗରେ କବିତାଟିକୁ ବିଭକ୍ତ କରାଯାଇଛି । ପ୍ରଥମଭାଗରେ ଯେ କେହି ପାଠକ ଦୋହଲୁଥିବା ଅସହାୟ ମନ ସଂବଂଧରେ ସୂଚନା ପାଂତି । କବିଙ୍କ ମନର ଆବର୍ତ୍ତନ 'ସମୟ' ବା 'ସମୟର ବିଚିତ୍ର ବିଚିତ୍ର ଯାଦୁକର'କୁ ସାକ୍ଷ୍ୟ ରଖି ବହୁ ପ୍ରକାରର ବାହ୍ୟିକ ପରିଚୟ ଭିତରେ ନିଜର ସଂଜ୍ଞା ଖୋଜି ପାଇବାକୁ ଚେଷ୍ଟା କରିଛି । ସମ୍ବେଦନଆ ଜୀବନର ଜ୍ୟାମିତିକ ସୂତ୍ର କବିଚେତନାକୁ ସ୍ୱପ୍ନରୁ ବାସ୍ତବଆଡ଼େ ଟାଣି ନେଇ 'ନିଷ୍ଠୁର ସତ୍ୟ'ର ସାମନାସାମନି ହେବାର ପ୍ରସ୍ତୁତି ଦେଇଛି, ଯଦିଓ ଏକ 'ସଦା ବର୍ତ୍ତମାନ' ଏ ପ୍ରକାର ଅନୁଭୂତିକୁ ସମର୍ଥନ କରେ । ଅହେତୁକ

ଅତୀତ ଏବଂ ଅନାଗତ ଭବିଷ୍ୟତ ଭିତରେ ବର୍ତ୍ତମାନର କୌଣସି ଗତି ବା ସ୍ଥିତିସ୍ଥାପକତା ନାହିଁ । ତେଣୁ ଯୋଡ଼ିଏରୁ ଗୋଟିଏ ବାଟ ବାଛିନେବାକୁ ହବ : 'ବିମର୍ଷତା' ବା 'ଉଦ୍‌ବେଗତା' । ବୋଧହୁଏ ବିମର୍ଷତା କବି ଚେତନାକୁ ନିଶ୍ଚିତଭାବରେ ଶିକାର କରେ । ସମସ୍ତ ବିନ୍ଦୁଥର ତାଂକ 'ପ୍ରେମିକାର ଫଟୋଗ୍ରାଫ୍' ସବୁ ଫୋପାଡ଼ି ଦେଇଛ । ଅଥଚ ଅଂଗେ ନିଭାଇଥିବା ଶୂନ୍ୟ ଯଂତ୍ରଣାର ଶେଷ ହେଉନାହିଁ । ସଫଳତା ହାସଲ କରିବାକୁ ଚତୁର ଭୂମିକାରେ ବାହାରିବାକୁ ହେଉଛ ତ ନିଃସଂଗ ବିଫଳତାରେ ପ୍ରେମର ଉପସଂହାର ହେଉଛ । ଏ ସବୁ କେବଳ ସମୟର ଇଂଗିତରେ ହେଉଛ । ତେଣୁ କବିଂକ ବିମର୍ଷତା ଓ ଶୋକ କ୍ରମେ ସମୟର ପାଣିରେ ବତୁରିବା ଅବସ୍ଥାରେ ରହି ଅନ୍ୟ ଏକ ପରିଚୟ ନେଇଥିବାର ମନେହୁଏ ।

ଦ୍ୱିତୀୟ ଭାଗରେ ଉଦ୍‌ବେଗତା ଓ ବିମର୍ଷତାର ସଂଘର୍ଷ ଘଟି କିଛି-ସମୟ ପାଇଁ ଉଦ୍‌ବେଗତା କବିଚେତନାକୁ ଅଧିକାର କରେ । 'ଟେବିଲଗୁଆ ବିଶ୍ୱାସ'ର ପ୍ରତିନିଧିମାନଂକୁ ଡକାଇ 'ସମୟର ବର୍ଚ୍ଛାମୂନରେ' ଜୈବିକ-ଲାଳସାକୁ ତୃପ୍ତ କରିବାର ଏକ ସୂଚନା ଦିଆଯାଇଛ । କିଂତୁ ପ୍ରତାରଣା କରି 'ବିଦଗ୍ଧମାଧବର ମନଭୁଲା ଭୂମିକାରେ' କେତେଦିନ ଅଭିନୟ କରିବା ସଂଭବ ? ତେଣୁ ମନର ସ୍ଥିରତା ନାହିଁ । ଗତିହୀନ ବର୍ତ୍ତମାନ ସଂଗେ ତାଳ ନ ମିଶାଇ ନିଜର 'ବିପନ୍ନ ମର୍ଯ୍ୟାଦା' ବା ଦୋହଲିବା ଅବସ୍ଥାକୁ ଆୟତ୍ତ କରିବାର ସାମର୍ଥ୍ୟ ତାର ନାହିଁ । ତେଣୁ ଅବାସ୍ତବ ଜହ୍ନ ଆଲୁଅ ବା ଅନାନ୍ୟ ପରମ୍ପରକୁ ଟାଣିରଖି ପଳାଇଯିବାର ଚେଷ୍ଟା କରାଯାଇଛ । ଏ ପଳାଇଯିବାଟା ଜୀବନରୁ ନୁହେଁ । ନିତିଦିନିଆ ଜୀବନରୁ ନିଜେ ତିଆରି କରିଥିବା କାଳ୍ପନିକ ଜୀବନକୁ । ତେଣୁ 'ବର୍ତ୍ତମାନ' ଗତିହୀନ ମନର ଗତ ଭାବ । ଏଲିୟଟଂକ 'ଫୋର୍ କ୍ୱାର୍ଟେଟ୍‌ସ୍'ରେ ପ୍ରାୟ ଏପରି ପଂକ୍ତି କିଛି ଦେଖିବାକୁ ମିଳେ । ଯେପରି :

Time past and t!me future
Allow but a iittle consciousness. ('Buint Nortonr')

ଅତୀତ ଓ ଅନାଗତ କିଛି ସ୍ମୃତି ବା ଆକାଂକ୍ଷା କବିଙ୍କୁ ଦେଇ ପାରନ୍ତି, ବର୍ତ୍ତମାନ ନୁହେଁ ।

ତୃତୀୟସ୍ତବକରେ ପୁଣି ବିମର୍ଷତା । 'ଦୁଃଖର ରଙ୍ଗରେ' ସଂସାରର ସବୁ ଆଶ୍ୱାସନା କଳା ପଡ଼େ । ଅନେକ ଦୁଃଖ ଭିତରେ ସ୍ଥିତିହୀନ ମନକୁ ସମୟ ହୁଏତ ପୁଣି ଆକର୍ଷଣ କରିପାରେ 'ସରଙ୍ଗୀ ଠାଣିରେ ।' ଅର୍ଥାତ୍ ସମୟର ବହୁଳ ଜନଧର୍ଷଣରେ କବିଚେତନା କେଉଁ ଭୂମିକାରେ ବାହାରିବ, ତା' କେବଳ ସମୟର କାମ । କବି ବା ମଣିଷ କେବଳ ଗୋଟାଏ ଖେଳନା । ବିଚ୍ଛିନ୍ନତା ଭିତରେ ଅନ୍ତଃପୂର୍ଣ୍ଣ ଅନୁଭୂତିଗୁଡ଼ିକ ସ୍ପଷ୍ଟ ଭାବରେ ବାହାରି ଆସେ । ଅନେକ ଚରିତ୍ର ଭିତରେ ଏକ ସମୟର ଅବତାରଣା । 'ଶୋଭାଯାତ୍ରାରେ ମୂର୍ଚ୍ଛିତ ସମୟ / ପିଲାର ଚକିତ ଚହାଣୀରେ ସ୍ତମ୍ଭୀଭୂତ ସମୟ...... ନେତାଙ୍କର ସିଦ୍ଧଭାଷଣରେ / ରେଶନ୍‌ର 'କ୍ୟୁ'ରେ / ବସ୍ତିବାର ସୋପାନରେ'..... ଇତ୍ୟାଦି ସବୁଗୁଡ଼ିକ ଚରମ ବ୍ୟର୍ଥତା ଓ ବିଷଣ୍ଣତାର ପ୍ରତୀକ । ତେଣୁ 'ଶବ୍ଦ' ବା ସଂପର୍କମାନଙ୍କ ଭିତରେ ଏ ପାଖ ସେ ପାଖ ଦୋହଲିବା ଅବସ୍ଥାରେ ମନ ସେଇ ଶବ୍ଦ ବା ସଂପର୍କମାନଙ୍କୁ ମିଶାଇଦେବାର ଚେଷ୍ଟାକରି ଶେଷରେ କେବଳ ବ୍ୟର୍ଥ ହେଉଛି । ଏଣୁ ବ୍ୟର୍ଥତା ସହିତ ଝୁଲିବାର ସ୍ୱାଭାବିକ ସମ୍ବନ୍ଧ ରହିଥିବା ମନେହୁଏ ।

ସମୟ-ଚେତନାକୁ ପ୍ରାଗୈତିହାସିକ ସାହିତ୍ୟ ବା ମହାକାବ୍ୟରେ ଯେପରି ଭାବରେ ନିଆଯାଇଛି, ସାଂପ୍ରତିକ ସାହିତ୍ୟରେ ତାର ସମାନ୍ତରାଳ ପ୍ରତିକ୍ରିୟା ଦେଖାଯିବା ସ୍ୱାଭାବିକ । ଭଗବତ୍ ଗୀତା, ଉପନିଷଦ କିମ୍ବା ମିଲ୍ଟନ୍‌ଙ୍କ 'ପାରାଡ଼ାଇଜ୍ ଲଷ୍ଟ'ରେ ମଣିଷର

ସବୁ ବୁଦ୍ଧିବୃତ୍ତ୍ୟର ଅନେକ ଉପରେ ଏକ ଶାଶ୍ୱତ ଅନନ୍ତ ମହା-
ସମୟର ସୂଚନା ଦିଆଯାଇ କର୍ମବାଦ ବା ଭାଗ୍ୟବାଦର ଧାରଣା
ସୃଷ୍ଟି କରାଯାଇଛି । ଫଳେ ଏଇ ମହାସମୟକୁ ଅ-ପରୀକ୍ଷିତ
ଅନେକ ମତ ବା ଚିନ୍ତାଧାରା ସହିତ ମିଶାଇ ଦିଆଯାଇ ଏକ ଅସ୍ପଷ୍ଟ
ଅଦୈହିକ ସ୍ତରରେ ରଖାଯାଇଛି । ଦର୍ଶନର ଦୁର୍ବୋଧତା ଭିତରେ
ନିଜର ସ୍ୱାତନ୍ତ୍ର୍ୟ ହରାଇ ସମସାମୟିକ ପାଶ୍ଚାତ୍ୟ କବିତାରେ ସମୟ
ତାର ଅଲଗା ପରିଚୟ ନେଇଛି । 'ଫୋର କ୍ୱାର୍ଟେଟସ୍'ରେ ଏଇ
ଦାର୍ଶନିକ କ୍ଳିଷ୍ଟତା ଲକ୍ଷ୍ୟ କରାଯାଇପାରେ । କିନ୍ତୁ ପ୍ରମୋଦ
ପତ୍ରୀଙ୍କ କବିତାରେ ସମୟର ପରିଚୟ ସଂପୂର୍ଣ୍ଣ ଅଲଗା । ଏକ
ବାସ୍ତବ, ପରୀକ୍ଷିତ ଓ ସାମାଜିକ ବିଜ୍ଞାନର ପରିସର ଭିତରେ
ସମୟକୁ ରଖାଯାଇ କବିଚେତନାକୁ ଦେଖାଇ ଦିଆଯାଇଛି ।
ବିମର୍ଷତାରୁ ଉଦ୍‌ବେଗତା ଏବଂ ପୁଣି ବିମର୍ଷତା : ଏ ପ୍ରକାର ପରି-
ବର୍ତ୍ତିତ ଚେତନାକୁ ସମୟର ଅଂଶବିଶେଷ ଭାବରେ ନିଆଯାଇଛି ।
କୌଣସି ଘଣ୍ଟା ସହିତ ସମୟକୁ ତୁଳନା କରାଯାଇ ଦୋଳକ ସହିତ
ଅସ୍ଥିରମନ ବା ଚେତନାକୁ ତୁଳନା କରାଯାଇଛି । ତେଣୁ ସମୟକୁ
'ଆବଷ୍ଟ୍ରାକ୍ଟ୍' ସ୍ତରକୁ ଆଣାଯାଇ ଏକ ଅତିବାସ୍ତବ(ସରିଅଲିଷ୍ଟ୍)
ସ୍ତରରେ ରଖିବାର ଗୋଟାଏ ସୂକ୍ଷ୍ମ ଚେଷ୍ଟା କରାଯାଇଥିବା ପରି
ମନେହୁଏ । ଏଠାରେ ସମୟ ବହୁବିଧ, ସମାଜଚେତନାରେ
ପରିଚିତ ଏକ ନିର୍ଦ୍ଦିଷ୍ଟ ନିୟାମକ । କବିଙ୍କ ଅନୁଭୂତି, ବିଚ୍ଛିନ୍ନ
ହେଲେ ବି, ତାର ସ୍ୱାଭାବିକ ପ୍ରତିକ୍ରିୟା । ସମୟର ବିଷୟବସ୍ତୁ
ସମ୍ପର୍କରେ ଏହା ଏକ ପ୍ରୟୋଗବାଦୀ ଲେଖା କହିଲେ ଠିକହେବ,
କାରଣ ସମୟକୁ ସ୍ଥଳ ବିଶେଷରେ ସମାଜଚେତନାରୁ ଆଣି ବ୍ୟକ୍ତି
ଚେତନା ସହିତ ଫଳେ ମିଶାଇ ଦିଆଯାଇଛି । ବାହ୍ୟକେନ୍ଦ୍ରିକ

ଅଧୁନିକତା ସଂଗେ ସମ୍ବନ୍ଧକୁ ଖାପଖୁଆଇ ତାକୁ ଅନ୍ତରଙ୍ଗ ଭାବରେ 'ବେପରୁଆ' ବା ସ୍ୱାଧୀନ କରିବାର ଅର୍ଥ ହେଲା, କବି ଚେତନା ନୂଆ ଏକ ସଂଭାବନାମୟ ମୋଡ଼ରେ ଠିଆ ହେଇ ରାସ୍ତା ଠଉରାଇବା ଚେଷ୍ଟାରେ ଅଛି । ତେଣୁ ସମୟର ବିଶ୍ଳେଷଣ ଖୁବ୍ ସୂଚନାତ୍ମକ ମନେହୁଏ ।

କବିତାର ଆଂଗିକ ଅନୁଶୀଳନ କଲେ ମିତ୍ରାକ୍ଷର ଓ ମୁକ୍ତ ଛନ୍ଦର ମିଶ୍ରଣ ସ୍ପଷ୍ଟ ଜଣାପଡ଼େ । ଭାଷାର ସମତା ଅନେକାଂଶରେ ବ୍ୟାହତ ହେଇଛି, ଯେପରି "ବରୁଣ ଶୋକକୁ କାଳର ସତ୍ୟରେ / ବିଦଗ୍ଧ ମାଧବର ମନଭୁଲା ଭୂମିକାରେ / ଡବ୍ ଡବ୍ ଆଖିର ବୈଚିତ୍ର୍ୟକୁ ଫୋପାଡ଼ି ଦିଏ......" ଇତ୍ୟାଦି । ଦୃଷ୍ଟିକୋଣ ଓ ଅନୁଭୂତି କୌଣସି କବିଂକର ଖୁବ୍ ବ୍ୟକ୍ତି-ଗତ ହେଲେ ବି ଭାଷା ଓ ପ୍ରକାଶଭଂଗୀରେ ନିର୍ଦ୍ଦିଷ୍ଟ ସମତାର ପ୍ରୟୋଜନ ରହିଛି । ଏଠାରେ ସେ ପ୍ରକାର ଅଭାବ ସ୍ଥାନେ ସ୍ଥାନେ ଲକ୍ଷ୍ୟ କରାଯାଏ । ତେବେ ତୃତୀୟ ଭାଗରେ ଚାଳିକାସୁଲଭ ଶୈଳୀର ବଳିଷ୍ଠ ବ୍ୟବହାର କରା-ଯାଇଛି । ଏଠାରେ ଇଂରାଜୀଭାଷାର ପ୍ରୟୋଗ ଇତ୍ୟାଦି ଯେପରି ଯଥାର୍ଥ, କୌଣସି ଶବ୍ଦର ବାରଂବାର ବ୍ୟବହାର ଏବଂ ପ୍ରତୀକବାଦୀ ପ୍ରୟୋଗ କବିଂକ ଭାଷାର ବିଶେଷତ୍ୱ । ଯେପରି ସୁନ୍ଦରୀ ନାରୀ ସହିତ ସମୟର ତୁଳନା ହେଇଛି କିଂବା ଶବ୍ଦମାନଂକର ବିସ୍ତୃତ ଭିତରେ ହୁଏତ ସଂପର୍କମାନଂକୁ ଯୋଡ଼ିବା ବା ଅଲଗା କରିବାର କ୍ଷମତା କେବଳ ସମୟର ଅଛି : " ...ନା ସଂପର୍କ ଯୋଡୁଛି

ଆରଂଭରୁ ଶେଷ ପୁଣି ଶେଷରୁ

ଆରଂଭ ଯାଏଁ

ଶବ୍ଦଂକର ଇଲ୍ଲିକା ମଧ୍ୟରେ ।"

ଏଠାରେ ପ୍ରତୀକବାଦୀ ଭାଷାର ବ୍ୟବହାର ସମୟର ନୂଆ ପରିଚୟ ଦେବାରେ ସମର୍ଥ ହେଇପାରିଛି ।

ରୂପକଳ୍ପ କବିଂକର ମୌଳିକତା । ବ୍ୟକ୍ତିଗତ ଜୀବନର ଯେଉଁ ବିଚ୍ଛିନ୍ନତା ଏଠାରେ ଦେଖାଯାଏ, ପ୍ରତ୍ୟେକ ଗୋଟିଏ ଗୋଟିଏ ରୂପକଳ୍ପ । 'ଟାଣ, କଦା ବର୍ତ୍ତମାନ', 'ଶୂନ୍ୟ ଗର୍ଭର ଯନ୍ତ୍ରଣା', 'ବରୁଣ ଶୋକ',

'ସମସ୍ତର ସନ୍ଧି' ବା 'ରେଶନ୍'ର 'କ୍ୟୁ' ଇତ୍ୟାଦି ରୂପକଳ୍ପ ବାଛିନ୍ନତା ଭିତରେ ଏକକ ବ୍ୟକ୍ତିତ୍ୱକୁ ଅର୍ଥପୂର୍ଣ୍ଣ ଭାବରେ ପାଠକ ଆଖିରେ ଥୋଇପାରେ । 'ଚତୁର୍ଥ ଶୋକ' ସମସ୍ତଙ୍କର ଯନ୍ତ୍ରଣାର ରୂପକଳ୍ପ ଦ୍ୱୈତଭାବଂ କୌଣସି ଅଳ୍ପମାତ୍ରାରେ ସହ୍ୟ କରିଥିବା 'ସାଚୁରେଟେଡ୍' ହୋଇଯାଇଥିବା ଯନ୍ତ୍ରଣାର ପରିଚୟ ମିଳେ । ସବୁଠାରୁ ଶ୍ରେଷ୍ଠ ରୂପକଳ୍ପ । 'ବିଟ୍' କବିମାନଙ୍କର ପ୍ରଭାବ ପଡ଼ିଥିବାର ମନେହୁଏ । ଅନେକ ରୂପକଳ୍ପକରିଆରେ ମଧ୍ୟ ଯେପରି କରିଯୋ ପ୍ରଭୃତି 'ବିଟ୍' କବିମାନେ ସଂକ୍ଷିପ୍ତତା ରଖନ୍ତି ଏଠାରେ ସେ ପ୍ରକାର ଶୈଳୀ ଦେଖାଯାଏ । ମୋଟାମୋଟି ଭାବରେ ଏକ ସମୟୋପଯୋଗୀ କବିତା ଭାବରେ ନିଆଯାଇ ପାରେ ।

—ସତ୍ୟଶଙ୍କର ମିଶ୍ର

●

## ଅପିଲ୍ଆଲୁ : ବିବେକାନନ୍ଦ ଜେନା

(୧)

ଅହଲ ତୁମର କେତେ ଯୋଜନ ଓ
କେତେ ନଦୀର ସ୍ରୋତର ଡାକ
ପାର ହୋଇ ଏ ପର୍ଯ୍ୟନ୍ତ ଅସେ,
ଚନ୍ଦ୍ରାଲୋକେ ଯେବେ ସହରର ନଗ୍ନ ଦେହ
କେତେ ଶୋଭ ଦିଶେ ।

ତୁମେ କେଉଁଠି କେଜାଣି ଅଶ୍ୱତ୍ଥ ଛାଇରେ
ଛାଇଚକ୍କା କେଉଁ ପୋଖରୀର
ସଲଜ୍ଜ କାଳ୍ପନିକତା ପରି, କେତେ ଦୂରେ
ଛାଇର ଦ୍ୱୀପରେ ତୁମେ
ଏବଂ ତୁମ ଶୋଭ ଦେହ ଦିଶେ ।
ଅଧଅଧେ ଅଛ ତୁମେ ଚନ୍ଦ୍ରାଲୋକେ
ଯଦି ନ ବୁଲିବ, ତୁମ ଅହଲ ବି
ମୋ ପର୍ଯ୍ୟନ୍ତ ଲମ୍ବି ଅସୁଥିବ

କହୁଥାଅ ।

କେଉଁ ଗମ୍ଭୀର ହ୍ରଦେ
ତୁମ ପ୍ରଜ୍ୱଳିତ ଦେହ ଭାସେ ?

(୨)

ପଥ ଦିଶେ ନାହିଁ ତୁମକୁ ବି
ଏବଂ ତୁମେ ସୂର୍ଯ୍ୟସ୍ନାନ ସରି ଅନ୍ଧ
ଅଗଣାର ବାପଠାରୁ ପ୍ରକୋଷ୍ଠ ପର୍ଯ୍ୟନ୍ତ ।
କେବଳ ପବନ ଏବଂ ପାଦଶବ୍ଦ ।
ଅକାଙ୍କ୍ଷାର କମ୍ପନ ଓ ଦୀପାଲୋକ ।
ପ୍ରାଙ୍ଗଣରେ ତାଳ ଅଉ ଚନ୍ଦ୍ରାଲୋକ ।
ଲମ୍ବା ଲମ୍ବା ଗଛଙ୍କ ଛୁଆଁଟ ଏବଂ ଦୀର୍ଘଶ୍ୱାସ-
ମାନଙ୍କ ଲତାରେ ଛୁଏ ଅଶ୍ରୁ ଓ
ଦୁର୍ଗର ପ୍ରାଚୀର ଥରେ ।
ଅକାଙ୍କ୍ଷା, କମ୍ପନ ।
ଏବଂ ତୁମେ ଦୀପ ଜାଳି ଫେରିବା ପଥରେ
ବାତାୟନେ ଚନ୍ଦ୍ରାଲୋକ ।
ଛବି ମୋ 'ଶବ'ର ।

ଦୁଇଟି ପରିଚ୍ଛେଦରେ ବିଭକ୍ତ ଏ କବିତାଟି ଦୁଇଟି ଭାବାବେଗ-ଦ୍ୟୋତକ ଏକ ନୂତନଧର୍ମୀ କବିତା । ପ୍ରଥମଟିରେ ଅନେକ ଜିଜ୍ଞାସା, ସମ୍ଭାବନା ଓ ଅନୁଚ୍ଚାରିତ ଆଶାବାଦିତାର ସ୍ୱାକ୍ଷର ଓ ଦ୍ୱିତୀୟ ପରିଚ୍ଛେଦରେ ଜିଜ୍ଞାସାର ଉତ୍ତର, ସମ୍ଭାବନାର ସମାଧାନ ଓ ଦେହାତୀତ ପ୍ରେମର ଉତ୍କଂଠା ପ୍ରକଟିତ ।

କବିତାଟିର ସ୍ୱର ମାର୍ମିକ ପ୍ରଣୟାନୁରଣନ । ପରିବେଶ ଅତ୍ୟନ୍ତ ଶାନ୍ତ, ନୀରବ ସ୍ମୃତି-ଦୀପ୍ତ ଚନ୍ଦ୍ରିକା-ରଜନୀ । ଶବ୍ଦ ବିନ୍ୟାସ, 'ସଂଗଠନ, ଶୃଂଗାରିକତା ଓ ପରିବେଷଣରେ ନୂତନ ସ୍ୱାଦ କବିତାକୁ ବେଶ୍ ମଂଜୁଳ କରିପାରିଛି । କିଂତୁ କବିତାରେ ସନ୍ନିହିତ କାହାଣୀ-ଶିଳ୍ପର କ୍ଳିଷ୍ଟତା କବି ଓ ସାଧାରଣ ପାଠକ ମଧ୍ୟରେ କିଛିଟା ଆପାତ ଅନ୍ତରାୟ ସୃଷ୍ଟି କରିଛି, କହିଲେ ଅବାନ୍ତର ହେବ ନାହିଁ । ମୁଖ୍ୟତଃ କବିତାର ତ୍ରୟୋଦଶ ପଂକ୍ତି ପରେ''କହିଯାଅ''- ରସାନୁଭୂତି ପ୍ରତି ଏକ ଅନାକାଂକ୍ଷିତ ଆଘାତ ।

ସ୍ମୃତିବିଷ୍ଟ କବି ନିଜର ସ୍ମୃତି ଭିତରେ ପ୍ରେୟସୀ ଅଫିଲିଆକୁ ଦେଖି-ପାରିଛନ୍ତି । ଚନ୍ଦ୍ରସ୍ନାତ ରଜନୀରେ ସହରର ସ୍ୱଚ୍ଛ ଧବଳ ନଗ୍ନ ତନୁ କବିଙ୍କ

ମନରେ ଆଶା ଓ ଉତ୍କଂଠାର ଉଦ୍ରେକ କରାଇ ପ୍ରେୟସୀର ସାନ୍ନିଧ୍ୟ ଓ ତାର 'ଗୋରା ଦେହ' ପ୍ରତି ଏକ ଅଦ୍ଭୁତ କାମନା ଜାଗ୍ରତ କରାଉଛି । ସ୍ମୃତି-ସ୍ମରଣର ପ୍ରଥମ ପର୍ଯ୍ୟାୟରେ ପ୍ରେୟସୀ କବିଙ୍କର ମନ-ଦର୍ପଣରେ ଏତେ ସ୍ପଷ୍ଟ ପ୍ରତିଭାତ ହୋଇ ପାରିନାହିଁ । ଅଧା ଛାଇ ଅଧା ଆଲୁଅ ଭିତରେ ଅସ୍ପଷ୍ଟ ଅଥଚ ନିକଟତର ସେ । ଅଶ୍ୱତ୍ଥ ଗଛର ଛାଇରେ ଅଧା ଘୋଡ଼ା ପୋଖରୀର ପାଣି ଯେପରି କ୍ରୀଡ଼ାବତୀ ଗ୍ରାମ୍ୟବଧୂର ସଲଜ୍ଜ-କେଳିନୈପୁଣ୍ୟର ଆଲେଖ୍ୟ ଦେଇଥାଏ, ସେହିପରି କ୍ରମ-ଉଦ୍ଭାସିତ ସ୍ମୃତି-ସ୍ମରଣରେ କବିପ୍ରିୟାର ଚରିତ୍ର କ୍ରମଶଃ ସ୍ପଷ୍ଟତର ହୋଇଉଠିଛି । 'ଲାଳିତ୍ୟର ବିଦଗ୍ଧପ୍ରତିମା' ଅଫିଲିଆ କେଉଁ ଏକ ଛାୟା-ଦ୍ୱୀପର ଅଧ୍ୟୁଷିତା ଲଳନା ! କବିକଳ୍ପନାରେ ସେ କେଉଁ ଏକ 'ଛାୟାଚ୍ଛନ୍ନ ହ୍ରଦ'ରେ ସନ୍ତରଣଶୀଳା ଯାହାର ଉଜ୍ଜ୍ୱଳ ତନୁଲାବଣ୍ୟ କବିମନରେ ଆଶ୍ଚର୍ଯ୍ୟ ରୋମାଂଚ ତୋଳିଛି ।

ଏହି ସଂକ୍ଷିପ୍ତ କଥା-ଶିଳ୍ପଟି ଦ୍ୱିତୀୟ ପର୍ଯ୍ୟାୟରେ ଏକ ନାଟକୀୟ ମୋଡ଼ ଦେଇ ଅଧିକ ବଳିଷ୍ଠ ହୋଇ ପାରିଛି । ସେଇ ରାତି, ଦୀପାଲୋକ, ଜୋଛନା, ନିଃଶବ୍ଦ ନଥର ଭୌତିକ ପରିବେଶ ଠିକ୍ ଇଂରାଜୀ ପ୍ରି-ରାଫେ-ଲାଇଟ୍ କବିଙ୍କ କାବ୍ୟ ପରିବେଶ ଭଳି । ନିର୍ଜନ ଦୁର୍ଗ, ନିର୍ଜନ ପଥ । ଦୁର୍ଗର କୌଣସି ଏକ କକ୍ଷରେ ପ୍ରଜ୍ୱଳିତ ଦୀପ ପବନରେ ଥର ଥର । ଅସ୍ପଷ୍ଟ ପଦଶବ୍ଦ, ଗଛମାନଙ୍କରେ ସତର୍କ ଆଲୋଡ଼ନ । ଏହି ନିର୍ଜନ ରାତିରେ କବି ପ୍ରେୟସୀ ଅଫିଲିଆ ତାର ପ୍ରେମିକ ଉଦ୍ଦେଶ୍ୟରେ (?) ସ୍ମୃତିରୁ ଦୀପାଳି ଜାଳି ଝରାବୃଷ୍ଟ ଶବ୍ଦରେ ବାଟ ବାରି ବାରି ('ପଥ ଦିଶେ ନାହିଁ ତୁମକୁ କି') ନିଜର କକ୍ଷକୁ ଫେରି ଆସୁଛି । ଅଗଣାର ଦୀପ ଅସ୍ଥିର । ଦୀପାଲୋକର ଅସ୍ଥିର କଂପନ-ନାୟିକାର ଆକାଂକ୍ଷା, ପ୍ରତୀକ୍ଷା ଓ ଅତୀତ ମିଳନ-ସ୍ମୃତିର ପ୍ରତୀକ । ଅଶ୍ୱତ୍ଥ ଛାଇ ଘେରା ପୋଖରୀ । ଛାୟାଚ୍ଛନ୍ନ ଦୀପ, ଛାୟାଚ୍ଛନ୍ନ ହ୍ରଦ, ଅନୁଧାବିତ ପାଦଶବ୍ଦ. 'ଦୀର୍ଘଶ୍ୱାସମାନଙ୍କ ଲତାରେ ଆବେଷ୍ଟି', ଦୁର୍ଗର ପ୍ରାଚୀର ନିକଟରେ ସଦ୍ୟ ଆଗନ୍ତୁକର ଉପସ୍ଥିତି ଓ ଅଫିଲିଆକୁ ଅଚ୍ଛନ୍ନ କରି ରହିଥିବା ଛାୟା—ହିଁ ପ୍ରେମିକ କବିଙ୍କର ଓ ତାଙ୍କ ମୃତ ଶରୀରର । ପ୍ରଣୟୀର ପ୍ରେତାବତାରଣ !

ଅଫିଲିଆ—ନାମକରଣରେ ହାମ୍ଲେଟ୍ ପ୍ରେୟସୀ 'ଅଫିଲିଆ' କଥା ସ୍ୱତଃ ମନକୁ ଆସେ । ହତଭାଗିନୀ ଅଫିଲିଆ ଘଟଣା କ୍ରମେ ପ୍ରୀତି-ବଂଚିତ ହୁଏ । ପିତାଙ୍କ ମୃତ୍ୟୁ ଓ ପ୍ରଣୟୀର ବାତୁଳତା ତା ଦେହର ସମସ୍ତ ଶିହରଣକୁ ସଂ[illegible]ଠନ କରିନିଏ ଓ ଫଳରେ ସେ ଆତ୍ମହତ୍ୟା କରେ । ହାମଲେଟ୍‌ର ଅତୃପ୍ତ ପ୍ରଣୟବାସନା ବୋଧହୁଏ ମୃତ୍ୟୁ ପରେ ଅଫିଲିଆକୁ ଆଚ୍ଛନ୍ନ କରିରଖେ ?

କବିତାଟିରେ ବ୍ୟବହୃତ ଚିତ୍ରକଳ୍ପଗୁଡ଼ିକ କବିଙ୍କର ନିଜସ୍ୱ ଅନୁଶୀଳନ ଓ ଅନୁଭୂତିର ଆଲେଖ୍ୟ । ଜୁଇ, ଚନ୍ଦ୍ରାଲୋକ, ଶୁନ୍‌ଶାନ୍ ଘାଟ, ଅଗଣା, ନିର୍ଜନ ପରିବେଶ ତାଙ୍କ ରଚିତ ବହୁ କବିତାରେ ଦେଖିବାକୁ ମିଳେ । "ମୁଁ ଜଳୁଛି ଅଧା ଜୁଇ ଅଧା ଆଲୁଅରେ" "ଅଗଣାର କାନ୍ଥପାଖ ଭରିଯାଏ କଳାଗୁଈଟିଏ", "ପରିଚୟ ଓ ସ୍ୱୀକୃତି ନ ଦେଇଚ / ଯଦି ଜୁଇ ହୋଇ ତୁମ ଅଗଣାକୁ କେବେ ଆସିଥିଲି" ("ସଂଜଦୀପ"); "ରାତିଅଧେ ଚନ୍ଦ୍ରାଲୋକ ଉଜ୍ଜ୍ୱଳ ଜୁଇରେ / ମୁଁ ତୁମକୁ ଖୋଜେ ଯେବେ ଅଂଧକାରେ" ("କଲିକତାକୁ"); "ରାତି ଅଧେ ଫିକା ଫିକା ଜହ୍ନ ଆଲୁଆରେ ଅମାନିଆ ହୋଇ" ("ଭୂତ") ।

ତାଙ୍କର ପ୍ରେୟସୀ "ଅଶ୍ୱତ୍ଥ ଗଛରେ ଜୁଇ ଟାଙ୍କି କେଉଁ ପୋଖରୀର ସଲିଳନଗ୍ନତା ପରି" (ଆଲୋଚ୍ୟ କବିତା ପଂକ୍ତି ୭-୮) ଅବା "ମେଘଗୁଇ ବେହୁରଣ ତଳେ ବାଲିକାଷ୍ଠ ପରି ଉଗ୍ରନଗ୍ନତା ପରି" ("ଦେହ") କେଁଠିକା 'ପବନ ଭଳି' ବା "ଏକ ସଫେଦ୍ ଆଲୁଅ ପରି" ("ମଧ୍ୟାହ୍ନ") ।

ଆଲୋଚ୍ୟ କବିତାରେ 'ନିଦାଘରାତି' ଶବ୍ଦ, 'ଯେବେ' 'ଯଦି'ର ଯଦୃଚ୍ଛା ପ୍ରୟୋଗ, ଏବଂ ଦ୍ୱିତୀୟ କବିତାର ପ୍ରଥମ ତିନୋଟି ଧାଡ଼ିର ଗଠନ ରୀତି ଏତେ ଅର୍ଥବୋଧକ ଓ ସୁଖକର ନୁହେଁ । "ଚନ୍ଦ୍ରାଲୋକେ ଯେବେ ସହରର ନଗ୍ନ ଦେହ କେତେ ଖୋଲିଦିଶେ"; "× × କେଉଁ ପୋଖରୀର ସଲିଳନଗ୍ନତା ପରି..... ତୁମ ଗୋରିଦେହ ଦିଶେ"; "କେଉଁ ଜ୍ୟୋତ୍ସ୍ନାଚ୍ଛନ୍ନ ହ୍ରଦ ତୁମ ପ୍ରଜ୍ୱଳିତ ଦେହ ସ୍ପର୍ଶେ"—ଇତ୍ୟାଦିର ପ୍ରୟୋଗ ହୃଦୟସ୍ପର୍ଶୀ ଓ ଶୃଂଗାରଧର୍ମୀ (ସେନ୍‌ସୁଅସ୍) । "ଲଂବା ଲଂବା ଗଛଙ୍କ କୁହାଟ", "ଦୀର୍ଘଶ୍ୱାସମାନଙ୍କ ଲତାରେ ଆଶ୍ଳେଷ"—ପ୍ରୟୋଗରେ ନୂତନତା ଦେଖିବାକୁ ମିଳେ ।

ବିବେକ ଜେନାଙ୍କର କବିତାଗୁଡ଼ିକ ମୁଖ୍ୟତଃ ଲିରିକ୍‌ଧର୍ମୀ । ଏକାନ୍ତ ଭାବେ ଅନ୍ତର୍ମୁଖୀ, ଆବେଗମୟୀ ଏବଂ ସ୍ମୃତିଅନ୍ୱେଷଣର ଲିପି । ଏଥିରେ ଆଧୁନିକ ଜନମାନସର ଯନ୍ତ୍ରଣା କି ତୀବ୍ର ନୈରାଶ୍ୟବୋଧ ଓ ସାମାଜିକ ଚେତନା ପ୍ରତି କୌଣସି ଆକ୍ଷେପ ନାହିଁ । ଭାବପରିବେଷଣ, ଭାଷା ବିନ୍ୟାସ ଓ କବିତାର ଅଂଗସଜ୍‌ଜାରେ ନବୀନତା ବେଶ୍ ସ୍ପଷ୍ଟ ।



—ରାଜକିଶୋର ମିଶ୍ର

## ଅନ୍ଧ : ଘାଲାପ୍ ଦାସ

ଝଡ଼ ଝଡ଼ ଝଡ଼ ।
ଇଚ୍ଛାହୁଏ ବୁଲିଯିବ ।
କାହିଁ ଯାଇ ପାରୁନ ତ ?

ଶୁଣା କଥା । ସେ ଅପେ ଗଛ କଠାଳୀ
ସବୁ ଗଛ ମୂଳକୁ । ଠକ୍ ଠକ୍ ଶାଣ୍ଢୁଅ
କରନ୍ତ ୪ଦ ।

କାହିଁ ସେ ଅସୁନ ତ ?

ଦୂରରେ କଠାଳ କରେ
ଚକ୍କର ଦେଇ ଚାଲ ।
ଚାଲ । କେତୁକରେ ମୋତେ ?···କେ'···କେ' ।

ଝଡ଼ ଝଡ଼ ଝଡ଼ ଇଚ୍ଛାହୁଏ
ବୁଲିଯିବ ଅଖିରେ ଅନ୍ଧପୁଟୁଳି ବାନ୍ଧ ।
ଦଉଡ଼ି ଦଉଡ଼ି ଖୋଜିବ
ଅଙ୍ଗୁଠି, ସବୁଜ ଡ଼ୁଢ଼, ବାହୁଲତା, ଭ୍ରୂଲତା ।

ଅନ୍ଧପୁଟୁଳି ବାନ୍ଧ କ'ଣ ଦେଖିହେବ
ଉଲଗ ସତ୍ତା
ଉର୍ଜ୍ଜିଳ ଅକାଶର ଇନ୍ଦ୍ରଧନୁ ?

ଖାଲି ଅନ୍ଧାର । ଅନ୍ଧାର କଳା ସାନ୍ଧୁବାନ୍ଧୁ ଅନ୍ଧାର ଅନ୍ଧାରର
ପ୍ରଭୁଂକୁ ଯଦ ଦେଖି ହେବ ନା'—ଥରେ ଖାଲି ଥରେ
ପ୍ରଭୁ ହେ ।

'ଚାଲ୍ ଥକା ମନ ଯିବା, ଚକା ନୟନ ଦେଖିବା' କିଂବା 'କହଇ ମନ ଆରେ ମୋ ବୋଲ୍ କର, କଳାଶ୍ରୀମୁଖ ବାରେ ଦେଖିବା ଚାଲ' ଭଳି ଆତ୍ମସଂବୋଧନମୂଳକ ଗୀତିକା, ଓଡ଼ିଆ ଭଜନ ସାହିତ୍ୟରେ ପ୍ରଚୁର

ଦେଖିବାକୁ ମିଳେ । ପଂଚସଖାଂକ ସମସାମୟିକ ଓ ପରବର୍ତ୍ତୀ ଓଡ଼ିଆ ଭଜନ ସାହିତ୍ୟରେ ଅନୁରୂପ ନିର୍ବିକଳ୍ପ ଔଦାସିନ୍ୟ ଓ ପରମାତ୍ମାଂକ ସହ ଏକାତ୍ମା ହେବାର ଆକୁଳ-କାକୁତି ପରିଲକ୍ଷିତ ହୁଏ । ଶଂସିତ ଗୀତିକାରେ ପରମାତ୍ମାଂକ ସାନ୍ନିଧ୍ୟ ପାଇବାପାଇଁ ଆକୁଳ ଆକୁତିର ସ୍ୱର ଅନୁରଣିତ । ମଧ୍ୟଯୁଗୀୟ ଭଜନସାହିତ୍ୟ ଓ ଶଂସିତ ସାଂପ୍ରତିକ ଗୀତିକାର ଆତ୍ମିକ ଆବେଦନର ସ୍ୱର ଏକ ହେଲେ ମଧ୍ୟ, ଉପସ୍ଥାପନଶୈଳୀ ସଂପୂର୍ଣ ଭିନ୍ନ । ପାରଂପାରିକ ରଚନାର ଆରମ୍ଭମାରୁ ହିଁ, ପରମାତ୍ମାଂକ ସହ ଦର୍ଶନ ଅଭିଳାଷଉଦ୍‌ଘୋଷଣା, ରଚୟିତାର ବକ୍ତବ୍ୟକୁ ବର୍ଣ୍ଣନାଧର୍ମୀ କରିଥାଏ । ଅଥଚ ଶଂସିତ ଗୀତିକାର ପରିଣତମୁଖୀ ପରିସମାପ୍ତି ବେଳେ ହିଁ, ପାଠକ ଜାଣିବାକୁ ପାଏ କାବ୍ୟନାୟକର ପ୍ରୟାସ :

'× × ପ୍ରଭୁଂକୁ ଯଦି ଦେଖି ହେବନା-ଥରେ ଖାଲି ଥରେ ପ୍ରଭୁ ହେ !'

ପରିସମାପ୍ତି କାଳୀନ ଏହି ବକ୍ତବ୍ୟ ଉପସ୍ଥାପନହିଁ, ଶଂସିତ ଗୀତିକାଟିକୁ ନାଟକୀୟ ଉତ୍କଂଠା ଓ ପ୍ରବହମାନତାକାଳୀନ କ୍ଷିପ୍ରତା ଆଣି ଦେଇ ପାରିଛି ।

କବିତାର ଶୀର୍ଷକ ଓ ପଠନୋତ୍ତର, ଅନ୍ତିମ ଆବେଦନ ଭିତରେ ଏକ ଉଲ୍ଲେଖନୀୟ ଭାବାତ୍ମକ ବିରୋଧାଭାସ (paradox) ରହିଛି । ଏହି ବିରୋଧାଭାସ କବିତାର ରୂପଗତ, ଆଂଗିକ ଅଳଂକାର ବିଶେଷ ନୁହେ । ପକ୍ଷାନ୍ତରରେ ଏହି ବିରୋଧାଭାସ ଭିତରେ ହିଁ, କବିତାର ମାର୍ମିକ ବାଣୀ ପ୍ରମୂର୍ତ୍ତ, କାବ୍ୟନାୟକ ଏଠାରେ ଅଂଧ ନୁହେଁ; କାରଣ 'ଅଂଧପୁତୁଳି' ବାଂଧିବାର ଏକ ବିକଳ୍ପ ପ୍ରୟାସ, ତା' ଭିତରେ ଉଂକି ମାରିଛି ।ସଂଭବ୍ୟ ଅଂଧପୁତୁଳି ବାଂଧିବାର ନାୟକ ଚକ୍ଷୁଷ୍ମାନ୍, କିନ୍ତୁ ନ କାଳେ ଅଂଧ ନୁହେଁ । ଅଂଧ ନ ହୋଇ ମଧ୍ୟ, ଅଂଧପୁତୁଳି ବାଂଧି, ଅଂଧ ହେବାର ପ୍ରୟାସ, ବିଶ୍ୱସ୍ତତମ ସାଧନାର ଏକ ଅଂଗ, ଏ ଭଳି ସାଧନା କରିଥିଲେ ଚକ୍ଷୁଷ୍ମତୀ ଗାନ୍ଧାରୀ, ଅଂଧ ଧୃତରାଷ୍ଟ୍ରଂକ ପ୍ରତି ସଂବେଦନଶୀଳ ହୋଇ । 'ସହଧର୍ମିଣୀ' ଆଖ୍ୟାର ସାର୍ଥକତା ପ୍ରତିପାଦନ କରିବାକୁ ଯାଇ,

ଅର୍ଦ୍ଧାଂଗିନୀ ଗାଂଧାରୀ ସ୍ୱୀୟ ସ୍ୱାମୀଂକ ଭଳି ନିଜକୁ ସମସ୍ତ ଜାଗତିକ ବର୍ଣ୍ଣୋଜ୍ଜ୍ୱଳ ଐଶ୍ୱର୍ଯ୍ୟ ଦର୍ଶନରୁ ବଂଚିତ କରାଇଲେ । ଏହି କୃଚ୍ଛ୍ର ସାଧନା, ପୁଣି କାହାରି ପ୍ରବର୍ତ୍ତନା ବା ବାଧ୍ୟବାଧକତାରେ ନୁହେଁ; ଆପଣା ଛଡ଼ାଏ ଆପେ, ସ୍ୱେଚ୍ଛାପ୍ରଣୋଦିତ ଭାବେ ଉଦ୍‌ଭୂତ । ସତୀତ୍ୱ ପ୍ରତି ଏହା ବିଶ୍ୱସ୍ତତମ ସ୍ୱୀକାରୋକ୍ତି । ଶଂସିତ କବିତାରେ ମଧ୍ୟ ସମାନ୍ତରାଳ ଭାବ-ସତୀତ୍ୱ ବିଳସିତ । ଅବଶ୍ୟ ଏ ଭାବ ସତୀତ୍ୱର ଆଭିମୁଖ୍ୟ ଭିନ୍ନ । ଏଭାବ ସତୀତ୍ୱର ଭରକେନ୍ଦ୍ର ପ୍ରେମ । କବିତାରେ ନାୟକ ପ୍ରେମାନୁଭୂତିର ଏକ ବିବର୍ତ୍ତିତ ରୂପ ଦେଖିବାକୁ ମିଳେ । ପ୍ରାଥମିକ ପର୍ଯ୍ୟାୟରେ ଏହା ପ୍ରଣୟିନୀ ପ୍ରତି ଉଦ୍ଦିଷ୍ଟ । ସମସ୍ତ ଲୋକାୟତ, ଲୌକିକତା ଓ ସାଂସାରିକ ସ୍ୱାର୍ଥ ନିଜକୁ ସେ ଅସ୍ୱୀକାର କରେ । ପୁଣି, ପାରଂପରିକ ସମସ୍ତ ଐଶ୍ୱର୍ଯ୍ୟର ବର୍ଣ୍ଣବୈଭବକୁ ସେ ପ୍ରତ୍ୟାଖାନ କରେ । ପ୍ରତ୍ୟାଖ୍ୟାନର ପ୍ରତୀକାତ୍ମକ ରୂପକଳ୍ପ ହେଉଛି 'ଅଂଧପୁଟୁଳି' ପ୍ରେମ ଭଳି, ପ୍ରେମିକ ବି ଅଂଧ । ଅଂଧପୁଟୁଳି ପିଂଧା ପ୍ରେମିକର ପରବର୍ତ୍ତୀ ପ୍ରୟାସ ହେଉଚି '

"ଦଉଁଡ଼ି ଦଉଁଡ଼ି ଖୋଜିବି ଅଂଗୁଠି, ସବୁଜଚୂଡ଼ି, ବାହୁଲତା, ଭ୍ରୂଲତା,"

ଶଂସିତ କବିତାର କାବ୍ୟନାୟିକା ଅନାମିକା ଅନେକାଂଶରେ ଅମୂର୍ତ୍ତ ମଧ୍ୟ । ତା'ର ପ୍ରମୂର୍ତ୍ତାୟନ ପାଇଁ ଅଂଗୁଠି, ସବୁଜଚୂଡ଼ି, ବାହୁଲତା ଓ ଭ୍ରୂଲତାର ଆରୋପ । ଅଂଧପୁଟୁଳି ବାଂଧିବା ପୂର୍ବରୁ ନାୟକ ପାଇଁ ହୁଏତ ଏହାହିଁ ଥିଲା ସର୍ବାପେକ୍ଷା ଅଧିକ ଆକର୍ଷଣୀୟ ବିଭବ । ଅଂଧପୁଟୁଳି ବାଂଧିବା ପରେ, ଏହି ଆକର୍ଷଣୀୟ ବିଭବକୁ ଦଉଁଡ଼ି ଖୋଜିବାରେ, ଉର୍ଦ୍ଧ୍ୱାଭିମୁଖୀ ସ୍ପର୍ଶାନୁଭୂତିର ଏକ ସୁନିର୍ଦ୍ଦିଷ୍ଟ କ୍ରମିକତା ଦେଖିବାକୁ ମିଳେ । ଏହାରି ଅଗ୍ରମାରଂଭ ଅଂଗୁଳି ଓ ଭ୍ରୂଲତା, ନାୟିକାର ସାମଗ୍ରିକ ତନୁ-ବଲ୍ଲରୀର ପ୍ରତିଭୂ ନୁହେଁ । ଦଉଁଡ଼ି ଦଉଁଡ଼ି ଖୋଜିବା ଭିତରେ ଭିତରେ ହୁଏତ କେତେକ ନିର୍ଦ୍ଦିଷ୍ଟ ଅଂଗ ପ୍ରତ୍ୟଂଗ ସଂପର୍କରେ ସ୍ଥୂଳ ଅନୁଭୂତି ଆସିପାରେ । ଏ ଅନୁଭୂତି ସ୍ଥୂଳ, ସୀମିତ, ଅଥଚ, ନାୟକର ଅଭିଳାଷ, ମେଦମୁକ୍ତ, ଶୈଥଲ୍ୟହୀନ କୋଣ୍ଡୁଆଳିଆ, ନାୟିକାର ଆବରଣ ବିମୁକ୍ତ କାନ୍ତିରେ ଅବଗାହନ । କିନ୍ତୁ, ଅଂଧପୁଟୁଳି ବାଂଧିଲେ କେବଳ ଆବରଣ ବିମୁକ୍ତ

ଜ୍ୟୋତ୍ସ୍ନା ବିଳସିତ କାନ୍ତି ନୁହେଁ; ନାୟିକାର ସପ୍ତରଂଗୀ ଇନ୍ଦ୍ରଧନୁ ଭଳି ବୈଚିତ୍ର୍ୟମଂଡିତ ବର୍ଣ୍ଣୋଜ୍ଜ୍ୱଳ ସୌନ୍ଦର୍ଯ୍ୟ-ସଂଯୋଗରୁ ବଂଚିତ ହେବାର ଆଶଂକା ନାୟକକୁ ଏକ ପ୍ରଶ୍ନବାଚୀରେ ଶିହରିତ କରିଛି; :

"ଅଂଧପୁରୁଳ ବାଂଧି କ'ଣ ଦେଖିହେବ / ଉଲଗ୍ନ ଜହ୍ନ / ରଂଗିଲା ଆକାଶର ଇନ୍ଦ୍ରଧନୁ ?"

'ଉଲଗ୍ନ ଜହ୍ନ' ସୂଚିତ ଜ୍ୟୋତ୍ସ୍ନାର ପ୍ଲାବନ ଓ ଇନ୍ଦ୍ରଧନୁର ଚଞ୍ଚଳ୍ୟଲସା ବର୍ଣ୍ଣାଳୀର ଅନୁପସ୍ଥିତିର କଳ୍ପନା ଭିତରେ, ନାୟକର ଚେତନାଭୂମିରେ ନାଟକୀୟ ଅବତରଣ ହୋଇଛି, ଏକ ବିଚିତ୍ର ଅଂଧାରର । ଏ ଅଂଧାର ଆଲୋକର ଅନୁପସ୍ଥିତି ନୁହେଁ; ଏହା ଏକ ସ୍ୱୟଂପ୍ରକାଶ, ନିଘୋଳା ଖାଲି ଅଂଧାର । କବିତାର ଅନ୍ତିମ ପର୍ଯ୍ୟାୟରେ, ଏ ଅଂଧାର 'କଳା ସାଲୁ-ବାଲୁ, ଅଂଧାର ଆକାରର ପ୍ରଭୁ' ରୂପେ ପ୍ରକଳ୍ପିତ, କବି ସାର୍ଥକ ଭାବେ ଏହି ପ୍ରକଳ୍ପ ସଂଯୋଜନା ଦ୍ୱାରା, ପାଠକ ଚେତନାକୁ ପାରଂପାରିକ ବିଶ୍ୱାସ ବୋଧ ଦେବ-ଦେବ ବିଶ୍ୱଦେବ 'କଳାଶ୍ରୀମୁଖ' ସହ ସମନ୍ୱିତ କରିପାରିଛନ୍ତି । ସୁନିର୍ବାଚିତ 'କଳା ସାଲୁବାଲୁ' ପଦବିନ୍ୟାସ ଅରୂପ ଓ ଅସୀମତାଦ୍ୟୋତକ ପ୍ରଭୁଂକର ପ୍ରମୂର୍ତ୍ତତା ଅପେକ୍ଷା ଅମୂର୍ତ୍ତତାକୁ, ରୂପାୟିତ କରିବାରେ ଅଧିକ ସହାୟକ ହୋଇଛି । ଅସୀମ, ଅରୂପ 'ବିଶ୍ୱଦେବଂକୁ 'କଳାଶ୍ରୀମୁଖ' କରିବାରେ ଶିଳ୍ପୀ ସମସ୍ତ ଅକଳ୍ପନୀୟ ଓ ଅବର୍ଣ୍ଣନୀୟ ବର୍ଣ୍ଣ ଓ ରୂପକୁ ସୂଚନା-ସମ୍ଭାବିତ କରିପାରିଛନ୍ତି । ଠିକ୍ ସେହି ସ୍ଥିତିରେ 'କଳା ସାଲୁବାଲୁ ଅଂଧାର' ଦ୍ୱାରା ଅଭିବ୍ୟଂଜିତ ଅତଟ ଅଂଧକାର ଇଂଗିତ ଦ୍ୱାରା ଉପଲବ୍ଧି-ଉତ୍ତର, ଏକ କାବ୍ୟାୟିତ କରିବାର ସଫଳ ଉଦ୍ୟମ କରା-ଯାଇଛି । ଅଂଧାର ଏଠି ପାରଂପାରିକ ବର୍ଣ୍ଣବିଶେଷ ନୁହେଁ ଏକ ଅପାରଂପାରିକ ଆକାର । କବିଚେତନା ଏହି ଅପାରଂପାରିକ ଅରୂପ ମହାଚେତନା ଏକାତ୍ମ ହେବା ପାଇଁ ଉନ୍ମୁଖ ।

"ଅଂଧାର, କଳା ସାଲୁବାଲୁ ଅଂଧାର ଆକାର / ପ୍ରଭୁଂକୁ ଯଦି ଦେଖି ହେବନି" ।

ଅଂଧାର, ପୁଣି କଳା ସାଲୁବାଲୁ ଦୁର୍ବୋଧ୍ୟ ଅଂଧାରକୁ ଦେଖି ହୁଏନା ଅଂଧପୁଟୁଳି ବାଂଧିଥିବା ବ୍ୟକ୍ତି ପକ୍ଷରେତ ଏହା କଳ୍ପନା କାଳେ ସମ୍ଭବ ନୁହେଁ । ଅଥଚ ପ୍ରଣୟିନୀ ପାଇଁ ଅଂଧପୁଟୁଳି ବାଂଧିଥିବା କାବ୍ୟନାୟକ, ଏକ ବିବର୍ଦ୍ଧିତ ବିଚିତ୍ର ଅନୁଭୂତି ମଧ୍ୟରେ, ବିଭୁପ୍ରେମରେ ଅଂଧ 'ହୋଇ ପଡ଼ିଛି । ଏଠାରେ ଲକ୍ଷଣୀୟ ବିଷୟ ହେଉଛି, ପ୍ରଣୟିନୀ ସଂପର୍କିତ କାନ୍ତାପ୍ରେମ ଓ ବିଭୁପ୍ରେମ ପରସ୍ପର ପରିପନ୍ଥୀ ନୁହଁନ୍ତି, ବରଂ ପରି-ପୂରକ । କାନ୍ତା ପ୍ରେମର ଅନ୍ତିମ ବିବର୍ତ୍ତିତ ପରିଣତି ହେଉଛି, ପ୍ରଭୁଙ୍କୁ ଦେଖିବାପାଇଁ ବିଶ୍ୱସ୍ତତା, ସ୍ୱର-ଲିପିରେ ଝଂକୃତ ଆକୁଳ କାକୃତି ।

"ପ୍ରଭୁଂକୁ ଯେବେ ଦେଖି ହେବନା'ଥରେ ଖାଲି ଥରେ ପ୍ରଭୁହେ ।"

ଶଂସିତ ଗୀତିକବିତାର ପରିଣତି ପ୍ରେମ ଭିତରେ ହୋଇଥିଲେହେଁ ଏହାର ଅସ୍ମାରମ୍ଭ ମୃତ୍ୟୁ-ଚେତନାରୁ । କବିତାର ଉପୋଦ୍‌ଘାତରେ, କେଉଁ ଏକ ଅଦୃଶ୍ୟ ଅଜ୍ଞାତ ଇଲାକାକୁ ନିରୁଦ୍ଦିଷ୍ଟ ଯାତ୍ରାର ପ୍ରୟାସ ଅଭିବ୍ୟକ୍ତ :

'ଭାବ ଭାବ ଭାବ / ଇଚ୍ଛାହୁଏ ଚାଲିଯିବ;/କାହିଁ ଯାଇ ପାରୁନାହିଁ' ?

ଅଜ୍ଞାତ ଅଦୃଶ୍ୟ ଇଲାକା ଉଦ୍ଦେଶ୍ୟରେ ଆକାଂକ୍ଷିତ ଯାତ୍ରା ବିଡ଼ଂବିତ ହେବାରୁ କାବ୍ୟନାୟକର ସେହି ଇଲାକା ପ୍ରତି ଆକର୍ଷଣ ଓ ଉତ୍କଂଠା ଉତ୍ତରୋତ୍ତର ବୃଦ୍ଧିଲାଭ କରୁଛି । ଏହି ଅଜ୍ଞାତ ଇଲାକା ଏକ ମୃତ୍ୟୁର ସ୍ଥାନ । ମୃତ୍ୟୁହିଁ ଅମୃତର ସ୍ପର୍ଶ ଦିଏ, ଅତଏବ ଭୂମାଂକ ସଂଧାନ ଓ ନାୟକ ସଂପର୍କରେ ଶୁଣା କଥା ହେଉଛି :

"× × × ସେ ଆସେ,ଗଛକଣ୍ଟାଲୀ ସବୁ ଗଛ ମୂଳକୁ ଚକ୍ ଚକ୍
ଶାଣ ଦିଆ କରତ ଧରି ।"

ଏଠାରେ କବି ଚେତନା, ମହାକାଳ ସ୍ରଷ୍ଟାଂକୁ 'ଗଛକଣ୍ଟାଲୀ' ଭଳି ଅପାରଂପରିକ ରୂପକଳ୍ପରେ ସଙ୍କଳ୍ପିତ କରିଛି । ଗଛକଣ୍ଟାଲୀ ଭଳି ରୂପକ ଅପାରଂପରିକ ହେଲେ ମଧ୍ୟ ତାତ୍‌ପର୍ଯ୍ୟ ପୂର୍ଣ୍ଣ । ପରୋକ୍ଷ ଭାବେ ବିଚାର କଲେ, ଏହାର ତାତ୍ତ୍ୱିକ ପରଂପରା ସୁପ୍ରାଚୀନ । ପ୍ରାକ୍ ଓଡ଼ିଆ ଭାଷାରେ ରଚିତ 'ବୌଦ୍ଧଗାନ ଦୋହା'ରେ ମଧ୍ୟ :

'କାୟା ତରୁବର ପଂଚବିଡ଼ାଳ' ବୋଲି ଉଲ୍ଲେଖ ଅଛି । ଅର୍ଥାତ୍, କାହ୍ନୁଦାସ ମଣିଷ କାୟାକୁ ତରୁବର ବା ବୃକ୍ଷ ସଂଗ ତର୍କଣା କରି, ବୃକ୍ଷର ଡ଼ାଳ ଭଳି ଏଥିରେ ପାଂଚଟି ଇନ୍ଦ୍ରିୟ ରୂପକ ଡ଼ାଳଥିବାର ସୂଚନା ଦେଇଛନ୍ତି । ସୁତରାଂ ମଣିଷକୁ ଗଛ ରୂପେ ତର୍କଣା କଲେ, 'କାଳ ରୂପରେ ସଂସ୍ଥିତ' ('ଗୀତା') ବିଶ୍ୱତୋମୁଖୀ, ବିଶ୍ୱରୂପ, ବିଶ୍ୱଦେବଙ୍କୁ 'ଗଛକଟାଳୀ' ରୂପେ ଅଭିହିତ କରିବା ଯୌକ୍ତିକତାସମନ୍ୱିତ, ପୁଣି ଲୋକବିଶ୍ୱାସସମର୍ଥିତ । ମହାକାଳ ବିଶ୍ୱଦେବଙ୍କୁ, ପ୍ରଳୟ-ପଙ୍କିସ୍ପର୍ଶୀ, ସଂହାର ସୁଲଭ ନୈପୁଣ୍ୟ ପ୍ରଦର୍ଶନ ପାଇଁ ହାତରେ 'ଚକ୍ ଚକ୍ କଟାଣି ଦିଆ କରତର ଅବତାରଣା । ଅଥଚ କବିତାର ଦ୍ୱିତୀୟ ସ୍ତବକରେ, ସେଇ ଆକାଂକ୍ଷିତ ଗଛକଟାଳୀର ସାକ୍ଷାତ ନ ପାଇ ଅତୃପ୍ତ କବିଚେତନା 'ଗଛକଟାଳୀ' ବିଶ୍ୱଦେବଙ୍କୁ ପୁଣି ଶଲ ରୂପେ ତର୍କଣା କରିଛି ।

'ଦୂରରେ କଟାଳ କରେ,'ଚକ୍କର ଦେଇ ଶଲ''

ଓଡ଼ିଆ ଭଜନ ସାହିତ୍ୟରେ ମଧ୍ୟ ମହାକାଳ ହଂସଗୁଣ ବା 'ଶଲ' ରୂପେ ଚିତ୍ରିତ ।

''ଭଜମନ ଭୁଲି ନାହିଁକି / ଜଗିଛି କାଳ-ଛଂଚାଣ, ମନେ ନାହିଁକି ?''
ଉଦ୍ଧୃତ ପାରଂପରିକ ଭଜନର ରୂପକଳ୍ପ 'କାଳ-ଛଂଚାଣ' ଓ ସାଂପ୍ରତିକ କବିତାର ରୂପକଳ୍ପ 'ଶଲ' ମଧ୍ୟ ଶେଷୋକ୍ତ ରୂପକଳ୍ପ 'ଶଲ' ଅଧିକ ଇଂଗିତଧର୍ମୀ । ଏହାକୁ 'କାଳ-ରୂପକ ଶଲ' ବୋଲି କୁହା ନ ହୋଇଥିଲେ ମଧ୍ୟ ଅନୁରୂପ ଅର୍ଥ ଧ୍ୱନ୍ୟାତ୍ମକ ପରିବେଶ ମଧ୍ୟରେ ଅଭିବ୍ୟଞ୍ଜିତ । ମୃତ୍ୟୁ ଇଲାକାସ୍ଥିତ, ଅଜ୍ଞାତ ନାୟକର ଅନନୁଭୂତ ଆକର୍ଷଣରେ ଶିହରିତ ହୋଇ, କବିଚେତନା ନିଜକୁ ସମର୍ପଣ କରି କାକୁତି-ମିନତି କରିଛି;

××''ଶଲ ! ନେବୁକିରେ ମୋତେ ? ନେ'...ନେ... ।''

ଏଇ ସମ୍ବୋଧନରେ, ଆତ୍ମୀୟତା ଓ ବିଶ୍ୱସ୍ତତାର ସ୍ୱର ଅନୁରଣିତ ।

କବିତାଟିକୁ ସତର୍କତା ସହ ବିଶ୍ଳେଷଣ କଲେ ମନେହୁଏ ପ୍ରଥମୋକ୍ତ ତିନୋଟି ସ୍ତବକରେ ମୃତ୍ୟୁ ଚେତନା, ଚତୁର୍ଥ ଓ ପଂଚମ ସ୍ତବକରେ ସୌନ୍ଦର୍ଯ୍ୟ ବୋଧ ଓ ଶେଷ ସ୍ତବକରେ ଐକାନ୍ତିକ ବିଭୁପ୍ରେମ ପ୍ରକଟିତ । ବିଶ୍ୱାପିକା-ମୟ ମୃତ୍ୟୁ ଚେତନାରୁ ଉତ୍ତରଣ ପାଇଁ, ମଣିଷ ମୃତ୍ୟୁଂଜୟୀ ସୌନ୍ଦର୍ଯ୍ୟ-ସଂଧା-ନରେ ଉନ୍ମୁଖ ହୁଏ । ପୁଣି ଏହି ସୌନ୍ଦର୍ଯ୍ୟ ସଂଧାନର ଅନ୍ତିମ ପରିଣତି ପ୍ରେମାନୁଭୂତିରେ, ନିଖିଳ ପ୍ରାଣୀ ଜଗତ ମଧ୍ୟରେ ମଣିଷହିଁ ସର୍ବଗ୍ରାସୀ ମୃତ୍ୟୁ ଚେତନାକୁ ଅତିକ୍ରାନ୍ତ କରି: ସୌନ୍ଦର୍ଯ୍ୟ ଓ ପ୍ରେମର ସଂଧାନ ପାଇ ପାରିଛି । ଏହି ସଂଧାନ ମାନବୀୟ ସଂସ୍କୃତିର ଶୀର୍ଷତମ ସୋପାନ । ଶଂସିତ କବିତା-ରେ ମୃତ୍ୟୁଚେତନା, ସୌନ୍ଦର୍ଯ୍ୟ ଓ ପ୍ରେମର ବିବର୍ତ୍ତନଧାରା କାବ୍ୟିକ ରସାବ-ବୋଧ ମାଧ୍ୟମରେ ପ୍ରମୂର୍ତ୍ତ ।

ଆଂଗିକ ଦୃଷ୍ଟିରୁ ଦୁର୍ବୋଧ୍ୟ ଓ ଆୟାସସାଧ୍ୟ ନ ହୋଇ ମଧ୍ୟ ସାର୍ଥକ ଆଧୁନିକ କବିତା କିଭଳି ଲେଖା ଯାଇ ପାରେ, ଶଂସିତ କବିତା 'ଅଂଧ' ତାର ଏକ ସାର୍ଥକ ଦୃଷ୍ଟାନ୍ତ । କଥନ-ମୁଖୀ, ସାଧାରଣ ବାକ୍ୟରୀତି ନୈପୁଣ୍ୟ ସହ ସଂଯୋଜିତ ହେଲେ ଚମତ୍କାର, ଛନ୍ଦୋମୟ, ମର୍ମସ୍ପର୍ଶୀ କାବ୍ୟିକତା ସୃଷ୍ଟି କରିପାରେ । ଯେମିତି "ଭାବି ଭାବି ଭାବି / ଇଚ୍ଛାହୁଏ ଗ୍ଭଲିଯିବି/କାହିଁ ଯାଇପାରୁନିତ ?× × ଚିଲ ନେବୁକରେ ମୋତେ ?ନେ,ନେ" କବିତାର 'ଚିଲ' 'ଟଚ୍ଛୁକଟାଲି' ଭଳି ରୂପକଳ୍ପ ଅପାରଂପରିକ ହେଲେ ମଧ୍ୟ ଛିନ୍ନମୂଳ ନୁହେଁ; ବରଂ ଲୋକସଂସ୍କୃତି ଓ ଲୋକ ବିଶ୍ୱାସ ସହ ନିବିଡ଼ ଭାବେ ସଂଶ୍ଳିଷ୍ଟ । ସେଥିପାଇଁ ବୋଧହୁଏ ଏ କବିତାର ଆବେଦନ ଅବଚେତନସ୍ପର୍ଶୀ । ଅବଶ୍ୟ 'ରଂଗିନୀ ଆକାଶର ଇନ୍ଦ୍ରଧନୁ'ରୂପକଳ୍ପରେ ପରସ୍ପର ବିରୋଧୀ ଭାବ ଓ ଅଯୌକ୍ତିକତା ଥିବାଭଳି ମନେ ହୁଏ । ସାଧାରଣତଃ ବର୍ଷୁକା ମେଘମେଦୁର କୃଷ୍ଣାଭ ପୃଷ୍ଠପଟରେ ଇନ୍ଦ୍ରଧନୁ ବିଚ୍ଛୁରିତ ହୁଏ;ଇନ୍ଦ୍ର-ଧନୁର ପୃଷ୍ଠପଟକୁ ରଂଗିନୀ କହିବା ଦ୍ୱାରା କେଉଁ କାବ୍ୟିକ ଉଦ୍ଦେଶ୍ୟ ସଂସା-ଧିତ ବୃଦ୍ଧି ହୋଇ ନାହିଁ । ସାମଗ୍ରିକ ଦୃଷ୍ଟିରୁ ବିଗ୍ଭର କଲେ ଆଧୁନିକ ଓଡ଼ିଆ କବିତାକୁ ଦୁର୍ବୋଧ୍ୟତାରୁ ମୁକ୍ତ କରିବାପାଇଁ ଯେଉଁ ସ୍ୱାଗତଯୋଗ୍ୟ ଉଦ୍ୟମ ହେଉଛି ଏ କବିତାଟି ତାର ଏକ ସାର୍ଥକ ଦୃଷ୍ଟାନ୍ତ ।



—ଅଭିନ୍ନ ସାହୁ

**ଜହ୍ନ : ପ୍ରସନ୍ନ କୁମାର ମିଶ୍ର**

ଏଥର ତ୍ରିକୋଣ ଭୂମିରୁ
ଆମେ ଚୁପ୍‌ଚାପ୍ ଦେଖିପାରିବା ଜହ୍ନ ।
ତୁମର ପାଦ, ନାଭି ଦେଇ ବକ୍ଷରେ,
ବକ୍ଷଦେଇ ଓଠରେ,
ଓ ଓଠଦେଇ ଆଖିରେ
ଜହ୍ନ ପଡ଼ିବ । ମୀରବ ପାହାଡ଼ରେ
ନିଆଁ ଜଳିଲେ ଜହ୍ନବତିରେ ନୂଆ ଚମକ ।
ମେଘ ଜମିଗଲେ ଗୁମ୍ଫାରେ ପୁଲକ ।
ବାଦୁଡ଼ିମାନେ ଉଡ଼ିବାରୁ ଅଜଗରର ଦେହ ବ
ଜହ୍ନରେ ଚକ୍-ଚକ୍ ।
ବାଘ ମାଡିବାର ଭୟ ନାହିଁରେ ସୁନ୍ଦରୀ !
ଝରକା ଖୋଲି ରଖ । ଲହ-ଲହକା ପବନର ବା
କ କରିମନ୍ତି ଯେ ପଡେ ଝାଣିବା ଛଡ଼ା ବେଳେ ଅଧେ ।
ଗଛମାନେ ନଗ୍ନ ଯୋଗୀ । ପଥ ଖସିକେ
ଜହ୍ନ ଝସି ପଡ଼ିବନି ଯେ । ମନ କଲେ...
ଏଇ ହାତରେ ତାରା, ଏଇ ହାତରେ ଜହ୍ନ
ଏଇ ହାତରେ ସୂର୍ଯ୍ୟ ଧରିବା, ଓ
ଏଇ ହାତରେ ଖୋଳାଇ ପାରିବା
ପୃଥିବୀକୁ ('ଝଙ୍କାର'; ଏପ୍ରିଲ ୧୯୭୭)

**ଜହ୍ନ** ଏକ ପ୍ରେମ କବିତା । କିନ୍ତୁ କବିତାଟିର ଅନୁଭୂତିରେ କୌଣସି ପ୍ରାଣ ନାହିଁ । ବହୁ ବ୍ୟବହୃତ 'ଜହ୍ନ' ଚିତ୍ରକଳ୍ପକୁ କବି କୌଣସି ନୂତନତା ବା ସତେଜତାର ସହ ବ୍ୟବହାର କରି ପାରିନାହାନ୍ତି ।

ପ୍ରେମିକାଙ୍କ ପ୍ରତି ତାଙ୍କର କୌଣସି ନିଷ୍ଠା ବା ଆନ୍ତରିକତା ଦ୍ୱାରା ସ୍ପନ୍ଦିତ ହେଉ ନାହିଁ । ତେଣୁ ତାଙ୍କର ପ୍ରେମଭାବ ଲଘୁ ଓ ସୁଲଭ ହୋଇ ପଡ଼ୁଛି । ଫଳତଃ,

"ପଥ ଖସିଗଲେ
ଜହ୍ନ ଖସି ପଡ଼ିବନି ସେ । ମନ ଭାଙ୍ଗିଲେ……
ଏଇ ହାତରେ ତାରା, ଏଇ ହାତରେ ଜହ୍ନ
ଏଇ ହାତରେ ସୂର୍ଯ୍ୟ ଧରିବା, ଓ
ଏଇ ହାତରେ ଖେଳାଇ ପାରିବା
ପୃଥିବୀକୁ ।"

--ଏହି ପଂକ୍ତି ଗୁଡ଼ିକରେ କବି ଯେଉଁ ବିପୁଳ (ତାରା-ଜହ୍ନ-ସୂର୍ଯ୍ୟ-ପୃଥିବୀ) ବିହ୍ୱଳତାକୁ ସୂଚୀତ କରିବାକୁ ଚେଷ୍ଟା କରିଛନ୍ତି, ତାହା କୃତ୍ରିମ ଜଣା-ପଡ଼େ । କାରଣ ଏ ପ୍ରକାର ବିହ୍ୱଳତା ପାଇଁ ଯେଉଁ ଗଭୀର ଆବେଗ ଆବଶ୍ୟକ ତାହା କବିତାରେ ନାହିଁ ।

ଶ୍ରୀ ପ୍ରସନ୍ନ କୁମାର ମିଶ୍ରଙ୍କ ଏହି କବିତାଟି ଆମ ରାଜ୍ୟରେ କବି ବୋଲାଉଥିବା ଅନେକ ଅକବିଙ୍କ ପ୍ରେମକବିତାର ଏକ ପ୍ରତିନିଧି ପରି ମନେ ହୁଏ । ପ୍ରେମର ପ୍ରଚଣ୍ଡତା, ଗଭୀରତା ଓ ବିପୁଳତା ଖୁବ କମ କବି ଓ ମଣିଷଙ୍କ ଭାଗ୍ୟରେ ଘଟେ । ତଥାପି ଆମର ଯଶସ୍ୱୀ କବିମାନେ ତାଙ୍କର ପ୍ରେମକବିତା ଦ୍ୱାରା ଆମପ୍ରତି ଅକଥନୀୟ ଅତ୍ୟାଚାର କରି ଚାଲିଛନ୍ତି । ଏହି ପ୍ରେମ ବତୁଳ କବି (?)ମାନେ ବସ୍ତୁତଃ ଏକ ସାମାଜିକ ଓ ସାହିତ୍ୟିକ ରୋଗର ଲକ୍ଷଣ । ତା ହେଲା : ଆମ କବିମାନଙ୍କ ଜୀବନ ନିତାନ୍ତ ବ୍ୟକ୍ତିଗତ । ଇତିହାସ ଓ ସଭ୍ୟତାର ସ୍ରୋତ ଜୀବନକୁ ପ୍ଲାବିତ କରିନାହିଁ । ଫଳରେ ସେମାନେ ନିଜ ନାକ ଆଗକୁ ଦେଖି ପାରନ୍ତି ନାହିଁ । ଏହି ଅବସ୍ଥାରେ ତାଙ୍କ ପ୍ରେମ ମଧ୍ୟ କଳା ଦୃଷ୍ଟିରୁ ଅର୍ଥହୀନ ହୋଇପଡ଼େ ଓ ସମାଜ ଦୃଷ୍ଟିରୁ ଏକ ପ୍ରକାର ସ୍ୱାର୍ଥପରସ୍ତ ମନୋବୃତ୍ତିର ସୂଚନା ଦିଏ ।

— ରବିଶଙ୍କର ମିଶ୍ର

୯-୧୧-୬୮

## ଶୟତାନ ପାଇଁ ଗୋଟିଏ ସ୍ତୁତି : ଚିନ୍ତାମଣି ବେହେରା

ମୋର ଅସ୍ଥି-ପିଞ୍ଜରକୁ ହାତୁଡ଼ିର ନିର୍ମମ ପ୍ରହାରରେ ଚୂର୍ଣ୍ଣ କରି
ତାର ନିର୍ଯ୍ୟାସରେ ସୃଷ୍ଟି କରେ ମୌନ ଆତ୍ମାର ସେ ପ୍ରବୁଦ୍ଧ ସଙ୍ଗୀତ
ଧ୍ୱଂସ୍ତୁପ ଗହ୍ୱରର ଅଧିବାସୀ ସେଇ କୁତ୍ସିତ ଶିଳ୍ପୀ-ଶୟତାନକୁ
ମୋର ପ୍ରଣାମ ।

ଯେ ଶୟତାନ ମୋର ଆଖିର ଅଶ୍ରୁକୁ ଚରମ ଆନନ୍ଦରେ
ସୁରାଭଳି ପାନ କରି
ନିର୍ଲଜ୍ଜ ଉନ୍ମାଦନାରେ ମୋର ରକ୍ତାକ୍ତ କ୍ଷତ ଉପରେ ଫୁଟାଏ
କଣ୍ଟକିତ ଗୋଲାପ
ସେ ଶୟତାନର ଶିଳ୍ପ-ଚାତୁରୀକୁ ମୋର ଧନ୍ୟବାଦ ।

ଯେ ଶୟତାନ ତାର ହିଂସ୍ର ନଖଦନ୍ତରେ ମୋର ଅସହାୟ ଶରୀରକୁ
ବିଦୀର୍ଣ୍ଣ କରି
ମୋହରି ରକ୍ତରେ ହୋରି ଖେଳ ଉନ୍ମତ୍ତ ଶବ୍ଦରେ ସୃଷ୍ଟି କରେ
ଆକାଶରେ ଇନ୍ଦ୍ରଧନୁର କବିତା
ସେ ଶୟତାନର କାରିଗରୀ ମୋର କାମ୍ୟ ।
ନର୍ଗୀବ ଝୀଭନକ ଭଳି ଯେ ଶୟତାନ ମୋତେ ହାତରେ ଧରି
ସ୍ୱର୍ଗ ନର୍କରେ ନଚାଇ ବୁଲେ
ମୋହରି ସ୍ୱପ୍ନରେ ସୃଷ୍ଟି କରେ ଆକାଶର ଅଗଣିତ ତାରକା
ମୋହରି ପ୍ରବୃତ୍ତିରେ ରଚନା କରେ ଅନ୍ତହୀନ ପାତାଳର ବିଚିତ୍ର
ବର୍ଣ୍ଣୋତ୍ସବ
ସେ ଶୟତାନକୁ ମୋର ସ୍ୱାଗତ ।

ମୋହର କରୁଣ କାତର ନିଃଶ୍ୱାସରେ ଯେ ରଞ୍ଜିତ କରେ
ରାତ୍ରିର ଅନନ୍ତ ଗଭୀର ରୂପ
ମୋର ଜୀବନ୍ତ ଶରୀର ଉପରେ ରଚନା କରେ ଯେ
ଶ୍ମଶାନବାସୀ ଶିବ ଭଳି ପ୍ରଳୟର ତାଣ୍ଡବ.
ସକଳ ଅଶୁଭର ସ୍ରଷ୍ଟା ସେଇ ଶୟତାନ ମୋର ଉପାସ୍ୟ ।

ଯେଉଁ ଶୟତାନ ମୋର ସକଳ ସ୍ନାୟୁକୁ ଏକତ୍ରିତ କରେ
ପ୍ରସ୍ତୁତ କରେ ତାର ବୀଣାର ତନ୍ତ୍ରୀ
ମୋତେ ନୀରବ, କରୁଣ ଓ ନିର୍ଜୀବ କରି ଖିଆଲି ଭାବରେ
ଛୋଳେ ତାର ବୀଣାର ଝଙ୍କାର
ଯେଉଁ ଝଙ୍କାରର ମୂର୍ଚ୍ଛନାରେ ମୁଁ ଜନ୍ମନିଏ ସ୍ୱର୍ଣ୍ଣମୟ
ସୂର୍ଯ୍ୟ ଭଳି ଗଭୀର ତାମସୀ ରାତ୍ରିର ଗର୍ଭରୁ

ସଫଳ ହୁଏ ମୋର ରାତ୍ରିର ତପସ୍ୟା
ସେ ଶୟତାନ ମୋର ସିଦ୍ଧିଦାତା ଦେବତା
ନୂତନ କାବ୍ୟର ସ୍ରଷ୍ଟା—ମୋର ନିଭୃତ ଆତ୍ମାର କାରିଗର ।
('ତୃତୀୟ ଚକ୍ଷୁ', ଫ୍ରେଣ୍ଡସ୍ ପବ୍ଲିଶର୍ସ, ୧୯୭୫, ପୃ. ୨-୩)

ମଣିଷ ମନର ଏକ ଶକ୍ତିଶାଳୀ ପ୍ରବୃତ୍ତି-ଶୟତାନୀ ପ୍ରବୃତ୍ତି-ର ପରିଚାୟକ ଭାବରେ 'ଶୟତାନ'କୁ ଗ୍ରହଣ କରି କବିତାଟି ଆପାତତଃ ତା'ର 'ସ୍ତୁତି'ଗାନରେ ବ୍ୟାପୃତ । କିନ୍ତୁ କାବ୍ୟ-ଚିନ୍ତା ତଥା କାବ୍ୟ-ଆବେଗର ପରିପ୍ରକାଶ ସୁନିୟନ୍ତ୍ରିତ ନ ହୋଇ ପାରିଥିବାରୁ କବିତାଟି ଅତି-କଥନ, ଉଦ୍ଦେଶ୍ୟହୀନ ପୁନରାବୃତ୍ତି, ବକ୍ତୃତା ଦେବାର ଭଂଗୀ ଓ ଭାବଗତ ସଂଗତିହୀନତା ଇତ୍ୟାଦି ନାନା ଦୋଷରେ ଅସ୍ୱାନ୍ତ ହୋଇ ପଡ଼ିଛି ।

କବିତାର ପ୍ରକାଶଭଙ୍ଗୀରେ ସଂଯମ ଓ ନିୟନ୍ତ୍ରଣର ଅଭାବର ମୂଳ ଉତ୍ସ ବୋଧହୁଏ କାବ୍ୟ-ଚିନ୍ତାର ଅସ୍ପଷ୍ଟତା । ଶୟତାନର ସ୍ତୁତିଗାନକୁ ଭାବସତ୍ତା ଭାବରେ ଗ୍ରହଣ କରିବାର ପରିକଳ୍ପନା ଅବଶ୍ୟ ଓଡ଼ିଆ ସାହିତ୍ୟରେ ହୁଏତ ନୂତନ; କିନ୍ତୁ ଏହି ପରିକଳ୍ପନା କେବଳ ଗୋଟିଏ 'ଆଇଡ଼ିଆ' ସ୍ତରରେ ରହିଯାଇଛି । ଯେଉଁ ପ୍ରକାର ଗଭୀର ଚିନ୍ତା ବା ମନନ ଏକ 'ଆଇଡ଼ିଆ'କୁ ବ୍ୟକ୍ତିଗତ ଉପଲବ୍ଧିର ସ୍ତରକୁ ଉନ୍ନୀତ କରେ, ତା'ର ସ୍ୱାକ୍ଷର ଅନ୍ତତଃ କବିତାଟିରେ ନାହିଁ । ଅନ୍ୟ କଥାରେ କହିଲେ, କବିତାଙ୍କ ନୂତନ 'ଆଇଡ଼ିଆ'ଟିର ଆପାତ-ଚମତ୍କାରିତାରେ ମୁଗ୍ଧ ହୋଇଯାଇ କବି କାବ୍ୟ-ବ୍ୟକ୍ତବ୍ୟ ବା ଭାବସତ୍ତା ସଂପର୍କରେ ଯଥେଷ୍ଟ ଚିନ୍ତା ନକରି କବିତାଟି ରଚନା କରିପକାଇଛନ୍ତି । ଫଳତଃ, କବିତାଟିର ପ୍ରଥମ ପାଂଚଟି ସ୍ତବକ (ଷ୍ଟାନ୍‌ଜା) ଓ ଶେଷ ସ୍ତବକ ମଧ୍ୟରେ ଗୁରୁତର ଅସଂଗତି ଦେଖାଦେବା ସଂଗେ ସଂଗେ ଅନ୍ୟାନ୍ୟ ଆନୁଷଂଗିକ କାବ୍ୟ-ଦୋଷ (ଯଥା : ବାକ୍‌ବହୁଳତା, ଭାଷଣ ଦେବାର ସ୍ୱର ଇତ୍ୟାଦି)ରେ କବିତାଟି ପୀଡ଼ିତ ହୋଇପଡ଼ିଛି ।

କବିତାଟିର ପ୍ରଥମ ପାଂଚୋଟି ସ୍ତବକରୁ କାବ୍ୟ-ନାୟକର ବ୍ୟକ୍ତିତ୍ୱର ଯେଉଁ ପରିଚୟ ମିଳେ, ତାହା ହେଉଛି—ଶୟତାନ ହାତରେ ସେ ଗୋଟିଏ 'ନିର୍ଜୀବ କ୍ରୀଡ଼ନକ ଭଳି'; ଶୟତାନ ତାକୁ ଅଶେଷ ନିର୍ଯ୍ୟାତନା ଦେଇ ନିଜର ଖିଆଲ୍ ଚରିତାର୍ଥ କରେ-ଯଥା : ଶୟତାନ "ମୋର ଆଖିର ଅଶ୍ରୁକୁ ବୀଭତ୍ସ ଆନନ୍ଦରେ ସୁରା ଭଳି ପାନ" କରେ; "ତାର ହିଂସ୍ର ନଖଦନ୍ତରେ ମୋର ଅସହାୟ ଶରୀରକୁ ବିଦାରଣ" କରେ; "ମୋହର କରୁଣ କାତର ନିଃଶ୍ୱାସରେ" "ରଂଜିତ କରେ ରାତ୍ରିର ଅନନ୍ତ ଗଭୀର ରୂପ" ଇତ୍ୟାଦି । କିନ୍ତୁ, ଷଷ୍ଠ ଓ ଶେଷ ସ୍ତବକରେ ହଠାତ୍ ପଢ଼ିବାକୁ ମିଳେ :

....ମୁଁ ଜନ୍ମନିଏ ହିରଣ୍ମୟ ସୂର୍ଯ୍ୟ ଭଳି/ବର୍ଷାର ତାମସୀ ରାତ୍ରିର ଗର୍ଭରୁ-
ସଫଳ ହୁଏ ମୋର ରାତ୍ରିର ତପସ୍ୟା
ସେ ଶୟତାନ ମୋର ସିଦ୍ଧିଦାତା ଦେବତା ।

କିପରି, କାହିଁକି, କେଉଁ ପରିସ୍ଥିତିରେ ପ୍ରଥମ ପାଂଚ ସ୍ତବକରେ ଶୟତାନର "ନିର୍ଜୀବ କ୍ରୀଡ଼ନକ ଭଳି" ଥିବା କାବ୍ୟ-ନାୟକ ହଠାତ୍ "ହିରଣ୍ମୟ ସୂର୍ଯ୍ୟ ଭଳି"

ଜନ୍ମ ନେଲା, ତା'ର କୌଣସି ସୂଚନା ଅନ୍ତତଃ କବିତାଟିରେ ନାହିଁ । ତା'ର "ରାତ୍ରିର ତପସ୍ୟା"କାହିଁକି, କ'ଣ ପାଇଁ ? କିପରି ବା ତାହା ପୁଣି 'ସଫଳ' ହେଲା ? ଯେଉଁ ଶୟତାନ ପୂର୍ବ ସ୍ତବକଗୁଡ଼ିକରେ 'ନିର୍ଜୀବ ନୀଳିଜନକ ଭଳି' "କାବ୍ୟ-ନାୟକକୁ"ନୀରବ,କରୁଣ ଓ ନିର୍ଜୀବ କରି ଖିଆଲା ଛନ୍ଦରେ" ଖେଳାଉଥିଲା,ଏଇ ଶେଷ ସ୍ତବକରେ ସେଇ ଶୟତାନ "ମୋର ସିଦ୍ଧିଦାତା ଦେବତା" କିପରି ବା ହେଲା ? କାବ୍ୟ-ନାୟକର ଏ 'ସିଦ୍ଧି'ର ସ୍ୱରୂପ କ'ଣ ? କବିତାଟିର ଅନାବଶ୍ୟକ ରେଟୋରିକ୍‌ର ସୁଅରେ ଭାସି ନ ଯାଇ ଜଣେ ସଚେତନ ପାଠକ ଯେତେବେଳେ ଏ ସବୁ ପ୍ରଶ୍ନ ପଚାରେ, ସେ ଦେଖେ ଏ ସବୁର ଉତ୍ତର କବିତାଟିରେ କେଉଁଠି ନାହିଁ । କୌଣସି ପ୍ରକାର ପ୍ରସ୍ତୁତି ବିନା ଶେଷ ସ୍ତବକରେ କାବ୍ୟ-ନାୟକର ଏ ପ୍ରକାର ରୂପାନ୍ତରୀକରଣ ଅସଂଗତ ଜଣାପଡ଼େ ।

କାବ୍ୟ-ବକ୍ତବ୍ୟର ଅସ୍ପଷ୍ଟତାର ଓ ଅନିର୍ଦ୍ଦିଷ୍ଟତାର ଅବଶ୍ୟମ୍ଭାବୀ ଫଳ ସ୍ୱରୂପ ଦେଖାଦେଇଛି ବାକ୍‌ବହୁଳତା ଓ ଭାଷଣ ଦେବାର ସ୍ୱର । କାବ୍ୟ-ନାୟକର ଦେହ ଓ ମନ ଶୟତାନର କବଳିତ—ଏହି କଥାଟିକୁ ବିଭିନ୍ନ କାବ୍ୟାଳଙ୍କାରଦ୍ୱାରା,ଚର୍ବିତଚର୍ବଣ ଉପମା ଓ ରୂପକଳ୍ପ ମାଧ୍ୟମରେ ଜୋରଦେଇ ବାରମ୍ବାର, ଫେଣେଇ ଫେଣେଇ କୁହାଯାଇଛି ପ୍ରାୟ କୋଡ଼ିଏ ଧାଡ଼ିରେ । ଭାଷା-ପ୍ରୟୋଗର ସୂକ୍ଷ୍ମତମ କଳା ନେଇ କବିତା—କବିଯଶପ୍ରାର୍ଥୀ ବ୍ୟକ୍ତିମାନେ ଏତିକ ମନେରଖିବେ ନାହିଁ ?

—ପ୍ରଫୁଲ୍ଲ କୁମାର ଜଗଦେବ

## ନିର୍ଦ୍ଦୋଷ ସ୍ୱର : ଗୋପାଳକୃଷ୍ଣ ରଥ

ମୋ ଅଠେଇଶ ବର୍ଷର ବନସ୍ପର ହାତ
ମୁଣ୍ଡରେ ଥିବା ପନ୍ଦର ଅଁର କେଶର ବୁଲେ ମୁଁ
କହୁଅଛି, ଧର୍ମାବତାରି, ମୁଁ ସଂପୂର୍ଣ୍ଣ ନିର୍ଦ୍ଦୋଷ
ଜଣ୍ଣଳଙ୍କ ମୁହୂର୍ତ୍ତର ସ୍ୱର
ତାହା ଭର୍ତ୍ତି ହୋଇଯାଏ ବୃକ୍ଷଙ୍କର ପେଟରୁ ଏବଂ
ହଦନ୍ତର ବାନ୍ଧନ ଏକ ଅନ୍ଧାର ସହର ।

ସତ ଠିକ୍ ଏଇମିତି ହେଲେ
ନଜଣ ପରି, ଧର୍ମାବତାର,
ତାହା ଅସିଥିଲେ ମୋର୍ ଘରି କୁଟୀରକୁ
ଦୁଦା ଦୁଦା ମଣିନେଇ ନୂଆ ଏକ ସକାଳର

